# କବିତା ସୂଚୀ

**ମିଠା କବିତା**

**ମିଠା କବିତା**

## ବନବୀଥିର ଆବାହନ -001

ଗୀତିକା ପୁସ୍ତିକା ଧରି ତେଜି ସଂବସଥେ,
କୋଳାହଳ ପରିହରି ଆସ ବନପଥେ;
        କହେ ମଳୟପବନ
ବନବୀଥି ଘନ ଘନ କରେ ଆବାହନ । ୧
        *ସଂବସଥ= ଘର, ବସ୍ତି;*

ଏଇଠି ବସି ଯା ସାଥୀ ସ୍ରୋତସ୍ୱତୀ ଧାରେ,
ଭରା ଏଠି ବସୁମତି ସୁଷମା ଅପାରେ,
        ଦୂରେ ଶାଶ୍ୱତୀ-ଆକାଶ
ପରସ୍ପରେ କରୁଛନ୍ତି ପ୍ରେମ ପରକାଶ । ୨

ତଟିନୀର ଶୀତ ବାତେ ଶାନ୍ତ ଉପବନେ,
ମତ୍ତ ମଧୁକର ମାତେ ମଧୁ ଆସ୍ୱାଦନେ,
        ପତ୍ର ପ୍ରସାରି କଳିକା
ଚଞ୍ଚରୀକେ କହେ ତାର ପ୍ରେମ-ଆଖ୍ୟାୟିକା ।୩

ନାହିଁ ଏଠି ପରିଚାର ନାହିଁ କେ ରାଜନ,
ସର୍ବଜନ ପରସ୍ପର ଆହ୍ଲାଦ ଭାଜନ,
        ନାହିଁ ଅଙ୍କୁଶ ନିଷେଧ,
ନାହିଁ ନିନ୍ଦା ଅପବାଦ ସମ୍ପ୍ରଦାୟ ଭେଦ । ୪

ଧାବିନୀର ଏକ ପାଖେ ଧନଧାନ୍ୟ ଭରା,
ଆର ପାରେ ଶସ୍ୟହୀନ ରସହୀନ ଧରା,
        ଏଣେ ପ୍ରାଣ ପଲ୍ଲବିତ,
ସେ ପାଖରେ ମରଣର ଗମ୍ଭୀର ସଂଗୀତ । ୫

ଏକୂଳେ ଶ୍ୟାମଳ ଦୁର୍ବା ପ୍ରସିକ୍ତ ମୌସୁମୀ
ଆର କୂଳେ ଦାବାନଳେ ଜର୍ଜରିତ ଭୂମି,
        ଯଥା ସନ୍ଧ୍ୟା ଆଗମନେ
ଦିବସନିଶୀଥ ମଗ୍ନ ପ୍ରେମ ଆଲିଙ୍ଗନେ । ୬
        *ପ୍ରସିକ୍ତ= ଓଦା, ଭିଜା;*

**ମିଠା କବିତା**

ଏପାରେ ଦେଖିବ ଘନ ଦର୍ଦ୍ଦରିକ ରଡି
ସେପାରେ ନୀରସ ମେଘ, ଶୂନ୍ୟ ଘଡଘଡି;
ଯହିଁ ଗଲେ ପଥ ହୁଡି
ଜଳ ବିନା କପିଞ୍ଜଳ ଆସିବେ ବାହୁଡି । ୭
*ଦର୍ଦ୍ଦରିକ= ମେଘ, ବେଙ୍ଗ; କପିଞ୍ଜଳ= ଚାତକ;*

ପ୍ରବେଶିଲେ ପୌର୍ଣ୍ଣମାସୀ ବସି ସାୟଂକାଳେ
ନିରେଖିବ ଶାନ୍ତ ଶଶୀ ପ୍ରାଚୀ ଚକ୍ରବାଳେ,
ଦୂର ପ୍ରତିଚୀ ଗଗନେ
ଅସ୍ତରବି ନିର୍ଗମନ ହିରଣ୍ୟ ସ୍ୟନ୍ଦନେ । ୮
*ହିରଣ୍ୟ ସ୍ୟନ୍ଦନ= ସୁନାର ରଥ;*

ଅକାଳେ ବିକାଳେ କେବେ କରିବ ଲୋକନ,
ବିହାୟସ ଦମ୍ପତିର ଗୃହ ଆଗମନ
ବକ୍ତ୍ରେ ଶିଶୁଭୋଜ୍ୟ ଧରି
ବିକଳେ ଦେଖିବେ ଅର୍ଭ ପଡିଥିବ ମରି । ୯
*ଲୋକନ= ଦର୍ଶନ; ବକ୍ତ୍ର= ଥଣ୍ଟ; ଅର୍ଭ= ଶାବକ;*

ଥରେ ଥରେ ପତ୍ତ୍ରରଥ ଭୂରୁହେ ବାହୁଡି
ଦେଖିବ ଶାବକ ସର୍ବେ ଯାଇଛନ୍ତି ଉଡି,
ପକ୍ଷୀପିତା ଥିବ ତୁନି,
କାନ୍ଦୁଥିବ ପକ୍ଷୀମାତା ବାହୁନି ବାହୁନି । ୧୦
*ପତ୍ତ୍ରରଥ= ପକ୍ଷୀ; ଭୂରୁହ= ଗଛ;*

ଏ ପାରେ ମୁଖର ଥିବ ମଧୁର ମିଳନ,
ସେ ପାରେ ବିରହବେଣୁ କରୁଣ ନିଃସ୍ୱନ,
ବେନି ବିଭାବ ଆଦରି
ସାଗରେ ସରିତ ଧୀରେ ଯିବ ଅଗ୍ରସରି । ୧୧

ପତ୍ର ଝଡି ନବପତ୍ର ଉଠିବ ପଲ୍ଲବି,
ପ୍ରତି ଦିବସାନ୍ତେ ଥିବ ରକ୍ତ ନବରବି,
ଭୂଷା ବିଭୂଷା ଅପାର,
ଅତଳ ମରଣଗର୍ଭୁ ଜୀବନସଞ୍ଚାର । ୧୨
*ବିଭୂଷା= ବୈଚିତ୍ର୍ୟ, ଚାକ୍ଚକ୍ୟ, splendour;*

ଲଲାଟେନ୍ଦୁ କବି ୨୦୨୧୦୧୩୧୧୭୪୪

. **ବିଦଗ୍ଧପ୍ରେମଗାଥା** -002

ଶୁଣ ମୋ ପ୍ରେୟସୀବାଳା ମୋ ମନୋଭାବନା!
ଜାଣେନା ଅଛି କି ନାହିଁ ତାର ସମ୍ଭାବନା;
ଏ ତ କଳ୍ପନା ମାତର,
ମନ କିନ୍ତୁ ବୁଝେ ନାହିଁ ଖୋଜେ ନିରନ୍ତର । ୧

ମନ କହେ ଧନ ତୋତେ ଅଗମ୍ୟ ଦୂରସ୍ଥେ
ଘେନି ଯିବି ବଲ୍ଲୀମାଳେ ବିଜନ ବନସ୍ତେ
ଲଙ୍ଘି ନଦୀବନଗିରି
ନିରେଖିବୁ କୁସୁମିତ କାନନର ଶିରୀ । ୨

ବସାଇବି ବାସ ଏକ ପ୍ରଧାବିନୀକୋଳେ,
ଉତ୍ଫୁଲ୍ଲବାଚଞ୍ଚଳେ, ଚଳ ସଲିଳକଲ୍ଲୋଳେ,
ଭ୍ରମି ଦିବସଟା ସାରା,
ବିଶ୍ରମି ନାବନିବାସେ ନିରେଖିବା ତାରା ।୩

ତୋଳିଦେବି କମଳିନୀ ସଙ୍ଗେ କୁମୁଦିନୀ,
ନାନା ରଙ୍ଗେ ବୋଳି ଦେବି ମୋ କ୍ଷୁଦ୍ର ମେଦିନୀ,
ପୁଣି ଯମୁନାର କୂଳେ,
ଗଭାରେ ତୋ ଶୋଭା ଭରି ଦେବି ନୀପଫୁଲେ ।୪

**ମିଠା କବିତା**

ମସ୍ତକରେ ଦେବି ଆଣି ରକ୍ତପାରିଜାତ,
ହେମପୁଷ୍ପ ହସ୍ତସୂତ୍ରେ ସାଜି ଦେବି ହାତ,
ଯାଇ ଚନ୍ଦନର ବନେ
ଆଙ୍କିବି ଚନ୍ଦନ ଚିତା  ଚନ୍ଦ୍ରମାବଦନେ ।୫
*ହେମପୁଷ୍ପ= ଚମ୍ପା;*

ଯୂଇଜାଇମଲ୍ଲୀହେନାମାଧବୀମାଳତୀ-
ସିତପୁଷ୍ପରାତ୍ରୀଗନ୍ଧାକେତକୀସେବତୀ,
ଗୁନ୍ଥି ଦ୍ରୁମୋତ୍ପଳ ମାଳା,
ନାନା ପୁଷ୍ପେ ସଜାଇବି କଟୀର ମେଖଳା।୬
*ସିତପୁଷ୍ପ=ଟଗର; ଦ୍ରୁମୋତ୍ପଳ= କନିଅର;*

କଜ୍ଜଳପୂରିତ ତୋର ଲୋଚନକମଳେ,
ଲୋହିତ ଓଷ୍ଠପଲ୍ଲବେ, ଆନନବିମଳେ,
ମୃଦୁ ଭ୍ରୂଲତାକୁଞ୍ଚନେ,
ନିରେଖି ଲେଖିବି ଗୀତ କେଦାରକାନନେ।୭

ରଖି ଯିବି କବିତାର ଅକ୍ଷରେ ଅକ୍ଷରେ
ବିଦଗ୍ଧ, ବିଶ୍ରବ୍ଧ ଭାବ ଅଛି ଯା' ବକ୍ଷରେ,
ସେହି ପ୍ରେମସ୍ରୋତସ୍ୱତୀ,
ଲେଖନୀର ଗାରେଗାରେ ହେବ ବେଗବତୀ ।୮
ବିଦଗ୍ଧ= କୁଶଳୀ; ବିଶ୍ରବ୍ଧ= ଶାନ୍ତ, ବିଶ୍ୱିସମିଶ୍ରିତ;

ଭାସିଭାସି ସେହି ତଟିନୀରେ ନୀରେ ନୀରେ
ଯିବା ତାର ଶେଷ ଗତି ବାରିଧିରେ ଧୀରେ;
ସିନ୍ଧୁସ୍ରୋତର ତରଙ୍ଗେ,
ସହଜେ ହଜିବା ତାର ଉଦ୍ବେଳ ଉସଙ୍ଗେ ।୯
ସହଜ= ଜନ୍ମଜାତ ସ୍ବଭାବ, ପ୍ରବୃତ୍ତି ଇତ୍ୟାଦି
ଲଲାଟେନ୍ଦୁ କବି ୨୦୧୮୦୯୦୫୦୦୧୫

## ମିଠା କବିତା

## କବିତା ପ୍ରତି -003

ଭାବଭୂମି ବିଳାସିନୀ ମାନିନୀ କବିତା,
କେ ବୁଝେ ମରମ ତବ ଅଳପ ଚିନ୍ତନେ,
ବୈଶ୍ୱାନରେ ସୁରନରେ ସଦା ପ୍ରଶଂସିତା,
ମହାଭାବ ଉପୁଜାଅ ଗୁଣୀଜ୍ଞାନୀଜନେ ॥୧

ନ ଥିଲା ଯେ କାଳେ ଭୂମି ଜଳ ଅଗ୍ନି ବାତ,
ନଥିଲା ଏ ଭୂତାକାଶ,  ତନ୍ମାତ୍ର, ତ୍ରିଗୁଣ
ନଥିଲା ଏ ବୁଦ୍ଧିମନଚିତ୍ତର ସଂଘାତ,
ନଥାଲା ଏ ଗନ୍ଧ ସ୍ୱାଦ ରୂପ ସ୍ପର୍ଶ ସ୍ୱନ ।୨

ସର୍ବଭୂତ ଥିଲେ ଲୁପ୍ତ ପ୍ରକୃତି ଗରଭେ,
ସମଗ୍ର ଅସ୍ତିତ୍ୱ ଥିଲା ଅଭେଦ୍ୟ ଅନ୍ଧାରେ,
ମୂର୍ଚ୍ଛିତ ନିଶ୍ଚେତ ଥିଲେ ଜୀବାତ୍ମା ସରବେ,
ଲୁଚି ତୁମେ ରହିଥିଲ ଶାଶ୍ୱତ ଓଙ୍କାରେ ।୩
.
ଶୂନ୍ୟାକାଶେ ରହି ଆଗୋ ବାଙ୍ମୟୀ ଦୁହିତା,
ତିତିକ୍ଷାପୂରିତ କଲ ଦୁର୍ବାର ପ୍ରତୀକ୍ଷା,
ନିସ୍ତରଙ୍ଗ ବୃତ୍ତି ହେଲେ ଗତି ସଂଯୋଜିତା
ଦେବ ବୋଲି ରକ୍ତି ସ୍ଥିତି  କୃତିର ପରୀକ୍ଷା ।୪

ସହସା ପ୍ରକୃତିରାଣୀ ହେଲା ପ୍ରସବିନୀ,
ପରମ୍ପରା କ୍ରମେ ସୂକ୍ଷ୍ମ ସ୍ଥୂଳ ସମୁଦ୍ଭବ,
ଲୟବାରିଧିରେ ଧୀରେ ପାହିଲା ଯାମିନୀ,
ନିଃସହାୟ ବିଶ୍ୱେ ହେଲା ନାନା ଉପଦ୍ରବ ।୫

**ମିଠା କବିତା**

ଜଳ ସ୍ଥଳ ଅଗ୍ନି ବାୟୁ ଆକାଶ ସକଳେ
ଆହରିଲେ ମିଳନର ଉଚ୍ଛଳ ଅମୃତ,
ଅଦ୍ୱୟ ବରଜି କଲେ ଅନ୍ୱୟ ବିହ୍ୱଳେ,
ପଞ୍ଚଭୂତ ଯଥାରୀତି ହେଲେ ପଞ୍ଚୀକୃତ ।୬

ପଞ୍ଚୀକୃତେ ପଞ୍ଚଭୂତେ ତନ୍ମାତ୍ର ନିଚୟ,
ପ୍ରକାଶିଲେ ନିରନ୍ତର ସ୍ୱକୀୟ ପ୍ରଭାବ,
ଶବ୍ଦ ତନ୍ମାତ୍ରକୁ କରି ନିଜ ପ୍ରତିଶ୍ରୟ
ବିକଶିଲ ବିଶ୍ୱମୟ ଲାବଣ୍ୟ ସ୍ୱଭାବ ।୭

ପ୍ରଜାପତି ଶାବ୍ଦୀମାତା ବାଗ୍ଦେବୀ ବଚନେ
ତୁମ କୃପାବଳେ କଲେ ଗାୟତ୍ରୀ ଗାୟନ,
ସର୍ଜନର କାରୁକୃତି ସ୍ଫୁରନ୍ତେ ଗୋପନେ,
କଳ୍ପେକଳ୍ପେ ହେଲା ଗୁଣଧର୍ମ ସଂସ୍ଥାପନ ।୮

ତୁମେ ସମୁଜ୍ଜ୍ୱଳା ଦେବି! ବେଦମନ୍ତ୍ରୋଚ୍ଚାରେ,
ଶ୍ରୁତି ମଧ୍ୟେ ଦ୍ୟୁତି ଏକା ତୁମେ ଗୋ କବିତା,
ଆରଣ୍ୟକେ ହିରଣ୍ୟକ ସର୍ବ ସୂତ୍ରସାରେ,
ଛନ୍ଦରାଗ ବିଭୂଷିତା ତୁମେ ହିଁ ସଂହିତା !୯

କେଉଁ ରାଜ୍ୟେ ଆରମ୍ଭିଲ ଚିତ୍ତ ବିମୋହନ,
ଏ ମହୀମଣ୍ଡଳେ ଅବା କାହିଁ ଗ୍ରହାନ୍ତରେ,
କେଉଁ ଧାମେ ଲଭି ଆଦି ପୟର ବ୍ୟଜନ
ମୁଗ୍ଧ କଲ କ୍ଷୁବ୍ଧ ଚିତ୍ତ ପ୍ରବୁଦ୍ଧ ମନ୍ତରେ ।୧୦

ଆନ ସୁଖଦୁଃଖେ ତୁମେ ସଦା ସହଚରୀ,
ଜାତଲଗ୍ନେ ବାଲ୍ୟକାଳେ କୈଶୋରେ ଯୌବନେ,
ଗୁଞ୍ଜରଣମୁଖରିତା ଦିବସ ଶର୍ବରୀ,
ମହୋତ୍ସବକୋଳାହଳେ, ବିଷଣ୍ଣ ବିଜନେ ।୧୧

**ମିଠା କବିତା**

ଅଛି କି ଏଭଳି ଧାମ ଏ ବିଶ୍ବ ଜଗତେ
ଯେଉଁ ଦେଶେ ପଡିନାହିଁ ତବ ପଦରେଣୁ ?
ନାହିଁ ତହିଁ ଦୟା ଧର୍ମ ପ୍ରେମ ପଥେ ପଥେ,
ବାଜେନା କି ତହିଁ କେବେ ସୁମଧୁର ବେଣୁ ?୧୨

ବୈଶ୍ୱାନର= ସର୍ବତ୍ର
ରକ୍ତି= ଅନୁରକ୍ତି
ଅଦ୍ବୟ= ପରିତୟ,
ଅନ୍ବୟ= ମିଳନ
ଶାଢୀ= ସରସ୍ୱତୀ
ପ୍ରତିଶ୍ରୟ= ଘର
ପ୍ରବୁଦ୍ଧ= ଜାଗ୍ରତ, ବିଙ୍କୋଚିତ

ଲଲାଟେନ୍ଦୁ କବି
ଲଲାଟେନ୍ଦୁ କବି ୨୦୧୮୦୯୦୧୦୯୦୦

## ସ୍ୱପ୍ନସୌଧର ରାଜପୁତ୍ର (1) -004

ଲେଖିଦେବି ପ୍ରେମପତ୍ରେ
ହେମ ହସ୍ତାକ୍ଷର,
ବିଦୀର୍ଣ୍ଣ ବିବର୍ଣ୍ଣ ହୃଦେ
ସୁବର୍ଣ୍ଣ ସ୍ୱାକ୍ଷର । ୧

ହସ୍ତାକ୍ଷର ଅନ୍ତରାଳେ
ବିକ୍ଷତ ଅକ୍ଷରା —
ଅକ୍ଷତ ବଲ୍ଲୂର ଘର,
ଅଦୃଶ୍ୟ ଅପ୍ସରା । ୨

ମିଠା କବିତା

ଅଦୃଶ୍ୟ ନକ୍ଷତ୍ରମାଳ
ସୁଦୃଶ୍ୟ ପ୍ରାନ୍ତର,
ନିରନ୍ତର ଭାଙ୍ଗି ଚାଲେ
ସ୍ୱପ୍ନ ଗନ୍ତାଘର । ୩

ସ୍ୱପ୍ନର ନଗରୀ ମଧ୍ୟେ
ପ୍ରୀତିର ପ୍ରତିମା,
ଲିଭି ଲିଭି ଚାଲେ ତାର
ନୟନଭଙ୍ଗିମା । ୪

ନୟନ କଜ୍ଜଳ ତଳେ
ଦୃଗ୍ଜଳ ବହଳ,
ନିଷ୍ଫଳ ପ୍ରେମପ୍ରତୀକ୍ଷା,
ଆକାଙ୍କ୍ଷା ଉଚ୍ଛଳ। ୫

ଉଚ୍ଛଳ କାମନା ମୂଳେ
ଅସହ୍ୟ ବେଦନା,
ମରି ମରି ସରି ଗଲା
କ୍ଷୀଣ ସମ୍ଭାବନା ୬

କ୍ଷୀଣୁ କ୍ଷୀଣତର ହେଲା
ବଞ୍ଚିବାର ନିଶା,
ଅର୍ଦ୍ଧପଥେ ପଥଚାରୀ
ହରାଇଲା ଦିଶା । ୭

ଦିଶାଦିଶାନ୍ତରେ ଘୋଟି
ଅଦିନ ବଉଦ,
ଗୋଟି ଗୋଟି ତୁଟିଗଲା
ସପନ-ସଉଧ । ୮

ସ୍ୱପ୍ନସୌଧ ସିଂହାସନେ
ବିଷଣ୍ଣ ନାୟକ,
ଅଜନ ସଦନ, କେହି
ନାହିଁ ସହାୟକ ।୯

ନିଃସହାୟ ରାଜସୁତ,
ନିଃଶୂନ୍ୟ ନଗରୀ,
ବିବଶ ପ୍ରଦୋଷ ପ୍ରାତଃ
ଦିବସ ଶର୍ବରୀ । ୧୦

ବିବଶ କାନନବନ
ବିପୁଷ୍ପ ବୀଥିକା,
ବ୍ୟାକୁଳିତ ଯଉବନ
ହଜିଲା ନାୟିକା। ୧୧

ହଜିଲା ନାୟିକା ତେଜି
ଦେଇଥିଲା ପ୍ରୀତି,
ଖୋଜିଲା ଆଖିରେ ଭିଜି
ରହିଗଲା ସ୍ମୃତି। ୧୨

ସ୍ମୃତିର ଶ୍ମଶାନେ ସେହି
ସୌଧକାରାଗାରେ
ରାଜପୁତ୍ର ଆର୍ଦ୍ରନେତ୍ର
ରୁଦ୍ଧ ହାହାକାରେ । ୧୩

ଲଲାଟେନ୍ଦୁ କବି

## ମିଠା କବିତା

## ସ୍ୱପ୍ନସୌଧର ରାଜପୁତ୍ର (2)

ହାହାକାର ଚାରିଧାର
        ହର୍ଷିତା ଲୁମ୍ବିନୀ,
ହରିତ ବଲ୍ଲୀପଲ୍ଲବେ
        ମଙ୍ଗଳପ୍ଲାବିନୀ ।   ୧୪

ଉଦ୍ବେଳ ଆଶୟ ଲାଗି
        ଅଳୀକ ହ୍ଲାଦନ,
କ୍ଳେଶର ଜଳଧି ଜଳେ
        ସ୍ୱଳ୍ପ ଆଶ୍ୱାସନ ।   ୧୫

ଆଶ୍ୱାସନେ ଉଦାସୀନ
        ତରୁଣ ହୃଦୟ,
ଅନ୍ୱେଷିବ ଶାଶ୍ୱତିକ
        ଅରୁଣ ଉଦୟ ।   ୧୬
ଅରୁଣ ଉଦୟ ଆଗୁ
        ଘନ ଅନ୍ଧକାରେ
ରାଜପୁତ୍ର ଅତିକ୍ରମି
        ଚଳିଲା ପ୍ରାକାରେ ।୧୭

ରାଜସୁତ ଉଦ୍ବେଳିତ
        ବେଳ ଆଉ କାହିଁ?
କେ କହିବ ଏହି ରାତି
        ପାହିବ କି ନାହିଁ !  ୧୮

ପାହିଲା ରଜନୀ, ହେଲା
ଅରୁଣ ଉଦୟ,
ବିକଶିତ ନବବଲ୍ଲୀ-
ପତ୍ରପୁଷ୍ପଚୟ । ୧୯

ହାସ୍ୟହୀନ ଲାସ୍ୟହୀନ,
ଅସୁମାରୀ ଭୟ,
ତ୍ରିଯାମାରେ ହଜିଗଲା
ରାଜାର ତନୟ । ୨୦

ଶାକ୍ୟକୁଳ ଶୋକାକୁଳ
ରାଜ ପରିବାରେ,
ରାଜ୍ୟ ହେବ ଅରାଜକ
ରାଜା ମରିବାରେ?।୨୧

ସ୍ତବ୍ଧ ରାଜା ଶୁଦ୍ଧୋଧନ
ପାର୍ଷଦ ଅଧୀର,
ମୌନ ମାୟାଦେବୀପୁତ୍ର
ନିରଞ୍ଜନା ତୀର । ୨୨

ଥିଲେ ଯାର ଚାରିଧାର
ସହସ୍ର ସୁନ୍ଦରୀ,
ସେହି ପୁତ୍ର ଅର୍ଦ୍ଧବସ୍ତ୍ର
ଯୋଗୀବେଶ ଧରି । ୨୩

ଝୁରେ ଯଶୋଧାରା; ଝୁରେ
ମହା ପଜାପତି
ଦୂରେ ବହୁ ଦୂରେ ଦୀନ
ରାଜନ ସନ୍ତତି । ୨୪

କୁଳରତ୍ନ ଖୋଜି କାନ୍ଦେ
	ରାଜପରିବାର,
ବିଶ୍ୱାତ୍ମା ଗୌତମ ହୃଦେ
	ବିଶ୍ୱ-ଅଶ୍ରୁଧାର । ୨୫

ବ୍ୟାକୁଳ କପିଳବାସ୍ତୁ
	ଆକୁଳ କ୍ରନ୍ଦନେ,
ଅସମ୍ମୂଢ ଯୋଗାରୂଢ
	ଅଟଳ ସାଧନେ । ୨୬

ଲଲାଟେନ୍ଦୁ କବି ୨୦୧୮୧୧୩୦୦୪୪୪

## ମଧୁରାତି -005

ଭିଜିଲା ଭିଜିଲା ଏ ଆଖି ହେଜିଲା
	ଖୋଜିଲା ସେ ମଧୁରାତି,
ସେହି ବିଭାବାସି ସେହି ପୌର୍ଣ୍ଣମାସୀ
	ଅମାବାସ୍ୟା ସଙ୍କରାନ୍ତି । ୧

ସେହି ଏକାଦଶୀ ମୁକ୍ତାକାଶ ଶଶୀ
	ଅନମ୍ବର ମେଘମାଳା,
ସେ ଶୀତଳହର ପାହାନ୍ତା ପହର,
	ଜାଳକାଠ ପାକଶାଳା । ୨

ମିଠା କବିତା

ସେହି ମାଣଥୁଆ        ପାନପତ୍ର ଗୁଆ
    ସେହି ଝୋଟିଦିଆ ଦିନ,
ସେହି ଲକ୍ଷ୍ମୀ ପାଦ        ପୂଜା ଶଙ୍ଖ ନାଦ
    ହଳଦୀ ଅଳତା ଚିହ୍ନ |    ୩

ଧୋଇବାକୁ ମୁହଁ        ବାଡିପଟେ କୂଅ
    ସେକୂଅରେ ଅରଘଟ,
ଆଉ ଦିଶେ ନାହିଁ,        ଦେଖିବାର ପାଇଁ
    ଆଶା ଖାଲି ଛଟପଟ |    ୪

ନୂଆ ନୂଆ ଦିଅଁ        ନୂଆ ଧୂପ ଘିଅ
    ବ୍ରତସୂତା ଭଳି ଭଳି,
ପୁରାଣ ଖଟୁଳି        କଥାର ବାଟୁଳି
    ସିଆଁ-ଲୁଗାପୂଜାଥଳୀ |    ୫

ସେହି ବର୍ଷାକାଳ        ଲଗାର୍ହସ୍ଥ୍ୟ ଜଞ୍ଜାଳ
    ଖୋଲା ଚାଳ ଭିଜା ଚୂଲ୍ଲୀ,
ସେହି ହସ ରୋଳ        ସେହି କଳି ଗୋଳ
    ସେହି ମୁହଁ ଫୁଲା ଫୁଲି | ୬

ସେ ଭଙ୍ଗା ଚୌକେଇ        ଅଙ୍କେଇ ବଙ୍କେଇ
    ଫୁଲ ପତ୍ର ତୋଳିବାର,
ପରବ ଅରୁଆ        ସିନ୍ଦୂର ଫରୁଆ
    ଘରସଜା ରବିବାର |    ୭

ସେହି ଘର ଆଜି        ଶମଶାନ ସାଜି
    ଡର ଲାଗେ ରହିବାକୁ;
କେହି ନାହିଁ ପାଶେ        ଝଡ କି ବତାସେ
    କଥା ପଦେ କହିବାକୁ |    ୮

**ମିଠା କବିତା**

ପଡି ରହି ଗଲା ଦଦରା ତସଲା
ପାନସଜ ଗୁଆକାତି,
ମାଟିର ମାଠିଆ ତେଜି ନିଛାଟିଆ
ଘେନିଗଲା ମଧୁରାତି | ୯

**ଲଲାଟେନ୍ଦୁ କବି**
**୨୦୧୯-୧୨-୧୮-୦୫:୨୯**

## ଚାନ୍ଦମୁହିଁ -006

(ନିଛାଟିଆ ରାସ୍ତାପାରେ ରହୁଥିଲା ସିଏ)

ନିଛାଟିଆ ରାସ୍ତା ପାରେ
ପକ୍ଷୀ ବସା ଗଛ ପରେ
ଛୋଟ ସେ କୁଟୀରେ ଥିଲା ବାଳିକା ସିଏ;
କଥା ପଦେ ହେବା ପାଇଁ
ନ ଥିଲା କେ ସାହି ଭାଇ,
ନ ଥିଲା ବି ପାଶେ କେହି ପ୍ରେମିକ ଟିଏ | -୧

ଘର ପାଖେ ତାର ନିତି
ଫୁଟୁଥିଲା ଜାତି ଜାତି
ମଲ୍ଲିକା ମଧୁ ମାଳତୀ କଦମ୍ବ ମାଳ;
ଆକାଶରେ କୁଆଁ ତାରା
ଦିଶେ ଯଥା ମନୋହାରା
ତହୁଁବଳି କେଡ଼େ ତୋରା ଶୋଭେ ସେ ଫୁଲ |୨

ଏକାକିନୀ  ଥିଲା ଝିଅ

ଜାଣିଛ କି କିଏ କୁହ

ଦେଖିଲା କେବେ ତା ଦେହ ମଶାଣି ମାଟି ?

ସେଇଠି ସେ ଅଛି ଶୋଇ;

ମୋ ଆଖିକୁ ରହି ରହି

ଆସେ ସେହି  ଚାନ୍ଦମୁହିଁ, ଟିକି ଝିଅଟି ||        ୩

`ଲଲାଟେନ୍ଦୁ କବି ୨୦୧୭୦୨୧୧-୨୩୪୫

## ଶିଶୁର ପ୍ରଥମ ଦୁଃଖ                    -007

'ମଧୁର ବସନ୍ତ କାଳ ବିରାଜିଲା ଆସି
ସୁମନ ସୁଗନ୍ଧେ ଦେଖ ଭ୍ରମରଟି ମାତେ,
କହ କେତେ ଥିବି ଆଉ ଏକାଟିଆ ବସି,
ଭାଇ ନାହିଁ ଆଉ ମୋର ଖେଳିବାକୁ ସାଥେ।୧

ଟହ ଟହ ହସୁଅଛି ପ୍ରଜାପତି ଗୋଟି
ଜଳଜଳ ସୂରୁଯର ସୁନେଲି କିରଣେ,
ବଳୁ ନାହିଁ ମନ ଯାଇ ଧରିବାକୁ ସେଟି ,
ମୋ ଭାଇର ମୁହଁ ଖାଲି ଆସୁଛି ସ୍ମରଣେ ।  ୨

ଲଗାଇ ଯେ ଥିଲୁ ଆମେ ବଗିଚାରେ ଫୁଲ,
ଫୁଟି ଦୋଳୁ ଅଛି ଧୀର ମଳୟ ବତାସେ;
ଫୁଲ ଭାରେ ତଳେ ଲୋଟି ପଡୁଅଛି ଡାଳ,
କାହିଁ ସେ ଯାଇଛି,ଥରେ ଡାକି ଆଣ ପାଶେ ।'

'ସିଏ ତ ଶୁଣୁନି ତୋ'ର ମଧୁର ବଚନ,
ଯାଇଛି ସେ, ଆସିବନି ଆଉ ତୋ'ର ପାଶ,
ସେ ଦିନ ଯେ ହସୁଥିଲା କଇଁଫୁଲ ସମ,
ନ ଦିଶିବ ପୃଥବୀରେ ଆଉ ତା'ର ହସ  ।୪

ମିଠା କବିତା

ଦୁଇ ଦିନ ପାଇଁ ଫୁଟି ଯାଇଛି ସେ ଝଡି,
ସୁଗନ୍ଧିତ ସମୁଜ୍ଜ୍ୱଳ ପ୍ରସୂନ ସମାନ,
ଖେଳୁଛି ତାରାଙ୍କ ମେଳେ ଆକାଶରେ ଉଡି,
ସେ ଲାଗି ଏକାକୀ ତୁହି ଖେଳିବୁରେ ଧନ |'୫

"ଛାଡି ସେ ଯାଇଛି ତେବେ ଫୁଲ ସବୁ ତା'ର,
ନେଇନି କି ପାଇଁ ପକ୍ଷୀ ଯେତେକ ସଙ୍ଗତେ ?
ଡାକିବା ଯେତେ କି ସବୁ ବୃଥା ହେବ ମୋର,
ଥରେ ସେ ଆସିବ ନାହିଁ ଏ ଦୀର୍ଘ ବସନ୍ତେ ?୬

ନଦୀ ତଟ ଆଡେ ଆଉ ଯିବା ନାହିଁ ବୁଲି,
ବୁଲିବାନି ବିଲ, ବଣ, ସବୁଜ ପ୍ରାନ୍ତର,
କିଆଁ ଭାଇ ଆସୁ ନାହୁଁ, କି ଦୋଷ ମୁଁ କଲି,
ଉଣା କିରେ ହେଲା ତୋତେ, ସେନେହ ମୋହର ?"୭

*ଲଲାଟେନ୍ଦୁ କବି ୨୩ - ମାର୍ଚ - ୧୯୬୯*

## ଶର୍ବରୀର ମୃତ୍ୟୁ ପରେ -008

ଦେଖ ରେ ଶର୍ବରୀ ଭାଗ୍ୟ ଅନୁସରି
ଆଶା ଯାଏ ମରି ମରି
ଦିଗନ୍ତ ସେ ପାରେ କାହା ଅଶ୍ରୁଧାରେ
ସଂଗୀତ ପଡୁଛି ଝରି ‖ ୧ ‖

ଯିଏ କହୁଥିଲା ସିନ୍ଦୂରା ଫାଟିଲା
ଆଶାର ସଂଗୀତ କାହିଁ?
ଛୋଟିଆ କଥାଟେ କହିଲି ଉଚ୍ଚାଟେ,
ଥରଟେ ଶୁଣିଲା ନାହିଁ ‖ ୨ ‖

**ମିଠା କବିତା**

ଗହନ ନିଶାରେ ମୌନ ଜିଗୀଷାରେ
ଶାସ୍ତ୍ରେ ଶସ୍ତ୍ରଜ୍ଞାନ କରି;
ଶାର୍ବରିକ କହେ ନାଶିବି ନିଗ୍ରହେ
ଧ୍ୟାନ-ଯଜ୍ଞେ ସ୍ନାନ କରି ॥ ୩॥

ଶିବପୁର ସ୍ଥଳେ ଶବାଧାର ତଳେ
ବାଳ ପଞ୍ଚାବସ୍ଥ ଦେଖି
କହେ ସର୍ବବେଦ ତାରୁଣ୍ୟେ ଏ ଭେଦ
ପ୍ରାରବ୍ଧ ଦେଇଛି ଲେଖିଧ ॥ ୪॥

କେତେ ନବ ନବ ଘେନି ଆସେ ଭାବ
ତାମସ ରଜନୀ ଘୋର;
ଇନ୍ଦୁ ଅସ୍ତମିତେ ନବୀନ ପ୍ରଭାତେ
ଘଟିଥିବ ଭାବାନ୍ତର ॥ ୫॥

ଏ ଭାବ ହଜିବ ଏଠୁ ଯେବେ ଯିବ
ନିଷଦ୍ବର ଅପସରି;
ମୋ ନେତ୍ର ଅଗ୍ରତେ ଭାବ ଅସ୍ତଗତେ
ନଗରାଟା ଥିବ ମରି ॥ ୬॥

*ଉଛାଟ= ଉତ୍କଣ୍ଠା; ଜିଗୀଷା= ଜିତିବାରଇଚ୍ଛା; ଶାର୍ବରିକ= ଶର୍ବରୀଚର, ରାତ୍ରିଚର; ପଞ୍ଚାବସ୍ଥ= ମୃତଦେହ; ସର୍ବବେଦ= ସନ୍ଥ, ସନ୍ନ୍ୟାସୀ; ନିଷଦ୍ବର= ରାତ୍ରି;*

ଲଲାଟେନ୍ଦୁକବି ୨୦୧୭୦୯୨୩-୧୭୩୨

## ଈପ୍ସିତ ମିଳନ -009

ନିର୍ନିମେଷ ଚକ୍ଷୁ ରକ୍ତାଭ ପଟଳେ,
ସ୍ୱପ୍ନ ମାଳ ମାଳ ସ୍ମୃତି ଅନ୍ତରାଳେ ||1

ତନ୍ଦ୍ରାଳସ ରାତ୍ରୀ, ଉତ୍ସାର ପ୍ରତୀକ୍ଷା;
ତିତିକ୍ଷାପୂରିତ ପ୍ରୀତିରପରୀକ୍ଷା ||2

ଅର୍ଦ୍ଧଶତ ବର୍ଷ ସମୟ ବିପାକେ
ଦୁର୍ଦମ୍ୟ ଅତୀତ ମାନସ ଫଳକେ ||3

ଗ୍ରୀଷ୍ମ ବର୍ଷା ଶୀତ ଦିବସ ଶର୍ବରୀ
ଚିତ୍ତ-ଗ୍ରନ୍ଥେ ଦୀପ୍ତ କୁନ୍ତଳ କବରୀ ||4

ଲଲାଟକ ଟୀକା, ଲୋଚନ କଜ୍ଜଳ;
ଚିବୁକ ରକ୍ତିମା ଓଷ୍ଠକ ପାଟଳ ||5

ଗଳେ ପ୍ରଲମ୍ବିତ ଗୁଟିକା ମାଳିକା;
ଆନନେ ବିମଳ ଉଜ୍ଜ୍ୱଳ ଜାଳିକା ||6

ଆତପେ ଫୁଲ୍ଲିତ ରଙ୍ଗିତ ନାସିକା;
ଶଙ୍କିତ-ଅମ୍ବରା, ସଂକ୍ଷିପ୍ତ-ଭାଷିକା ||7

ହ୍ୟସ୍ତନ ବିଭାତ ସମ ଦୃଶ୍ୟମାନ;
ଅଗମ୍ୟ ଦୂରତା; କ୍ରୁର ବ୍ୟବଧାନ ||8

ଜାଣେ ଅସମ୍ଭବ ଈପ୍ସିତ ମିଳନ;
ଉଦିତ କିନ୍ତୁ ଏ ହୃଦ-ଉଦ୍‌ବେଳନ ||9

ଲଲାଟେନ୍ଦୁ କବି ୨୦୧୭୧୧୦୯୧୨୩୨

*ପଟଳ= ପର୍ଦ୍ଦା; ଉପ୍‌ପାର= ଅନ୍ତହୀନ; ବିପାକ= ଫିକା ପଡିବା; ଲଲାଟ(କ)= କପାଳ; କୁନ୍ତଳ= କେଶ; ଜାଳିକା= ଓଢଣି; ଆଣପ= ଖରା; ଶଙ୍କିତ-ଅମ୍ବରା= ହାଲୁକା ବସ୍ତ୍ରରେ ଥିବା; ହ୍ୟସ୍ତନ= ହ୍ୟଃ (ଗତକାଲି) ତନ (ବାଲା); ଈପ୍ସିତ= ଚାହୁଁଥିବି, ଖୋଜୁଥିବା;*

## ଲତିକାବାଳାର ସ୍ୱନ -010

ହଜି ଗଲା ଦୂରେ ମାନିନୀ
    କାଳ ଯାମିନୀ କୋଳେ,
ଭିଜି ଗଲା ବେନି ଆନନ
    ଝରା ନୟନଜଳେ । ୧

ଥରେ ଥରେ ଫେରି ପଶ୍ଚାର୍ଦ୍ଧେ
        ଦେଖେ ଦୁଃଖିନୀ ବାଳା,
ଦୃଷ୍ଟିପାତେ ବଢେ ଦୃଗ୍ଜଳ
        ବଡ ଦୁଃସହ ଜ୍ୱାଳା । ୨

ଥରି ଉଠୁଥାଏ ବାଷ୍ପଳ
        ସ୍ୱରେ ନାହିଁ ଶବଦ,
କମ୍ପି ଉଠୁଥାଏ ରସନା
        ମୌନପ୍ରେମ-ଗଦ୍ଗଦ । ୩
        ପଶ୍ଚାର୍ଦ୍ଧେ= ପଛକୁ; ଦୃଗ୍ଜଳ= ଲୁହ; ବାଷ୍ପଳ= ଓଠ;

ସନ୍ତର୍ପଣେ ପାତେ ପୟର
        ଧୀରେ ଧରଣୀ ପରେ,
ଥରି ଉଠୁଥାଏ ଶରୀର
        ବ୍ୟର୍ଥ-ପ୍ରେମକାତରେ ।୪

ନୀରବତା ଭାଜି ଥର୍ଥର
        ଥରି ଉଠେ ମରୁତ
ସନ୍ତାପନେ ପତ୍ରମର୍ମର
        ରଚେ ବିମର୍ଷ ଚୂତ । ୫
        ଚୂତ= ଆମ୍ରଗଛ;

ସରିତ ସଲିଳ ତୋଳିଲା
        ବ୍ୟାକୁଳିତ କ୍ରନ୍ଦନ,
ଭୂଧର ଶିଖରେ ଗମ୍ଭୀର
        ହେଲା କନ୍ଦର ସ୍ୱନ । ୬

ଅଜଣା ତଲବ ବାଇଲା
        ବୀଣା ଖିନ୍ନ ଝଙ୍କାର,
ନଭ୍ରାଜ ଭୂଭାଗେ ବର୍ଜିଲା
        ବଜ୍ର, ଅଶ୍ରୁ-ସମ୍ଭାର । ୭
        ଭୈରବ=ସପର୍ବତ; କନ୍ଦର= ଗୁମ୍ଫା; ତଲବ= ବାଦ୍ୟକାର;

ଶୁଣି ସେହି ସ୍ୱନ ଅବନୀ
ଚାହେଁ ଅଶନି ମୁଖେ;
ସ୍ଫାରିତ ନୟନେ ଗଗନ
- ପଥେ ଚକିତ ବୁକେ । ୮

ଭିଜା ନେତ୍ରେ ଭାଷେ ବିକଳେ
ବତ୍ସା ଲତିକା ବାଳା
କଳି ମୋର ତୋଳି ଲଳନା
ଗଳେ ପିନ୍ଧାଅ ମାଳା ।୯
ଅଶନି= lightening; ବତ୍ସ= ଶିଶୁ, ସ୍ତ୍ରୀ: ବତ୍ସା;

ମାଗି ସେ ମାଳାରୁ ଆଣିବ
ତୋଳି ଫଳକଟିଏ,
ପ୍ରେମୀକୁ ତା' ଦେବ, ରଖିବ
ଅତି ଯତନେ ସିଏ । ୧୦

ଏ ଜୀବନେ ଆଉ ହେବ କି
ନାହିଁ ଦୁହିଙ୍କ ଦେଖା,
କିସ ଆଙ୍କିଥିବ ନିୟତି
କାହା କପାଳରେଖା । ୧୧

ଫଳକ= ପାଖୁଡାକୁ ଫଳକ କହିଛି; ନଭ୍ରାଜ୍= ମେଘ;

ଲଲାଟେନ୍ଦୁ କବି  ୨୦୨୧୦୩୨୫୧୨୦୩

## ମିଠା କବିତା

## ମଧୁମତି -011 -

ସୁଦୂର ଅତୀତେ ଅନେକ ବରଷ ତଳେ
ଅଳପ ବାଟରେ ସେଇଠି ସାଗର କୂଳେ
ଛୋଟିଆ ମୂଲକେ ଥିଲା ସେ ଛୋଟିଆ ବାଳା
ମଧୁମତି ନାମ ଶୁଣିଥିବ କଥା ଛଳେ ।।-୧

ମନେ ତାର ଗୋଟେ ଭାବନା ମାତର ଥିଲା
ଭଲ ପାଇ ମୋତେ ଖୁସି ଥିଲା ସେହି ବାଳା
ତା ଲାଗି ମୋ ମୁଖେ ହସ ଥିଲା ସଦା ଭରି
ସୁଖେ କାଟୁ ଥିଲୁ ଦୁହେଁ ଶଇଶବ ବେଳା ।।-୨

ଆକାଶ ରାଇଜେ ଦେଖୁଥିଲେ ଯେତେ ପରୀ
ପୀରତିଠୁ ବଳି ଶରଧାରେ ଜଳି ପୋଡି
ସରଜିଲେ ଥରେ ଏଡିକି ବରଷା ଝଡ
ମଧୁଝରା ମଧୁ- ମତି ଗଲା ମୋତେ ଛାଡି ।।-୩

ତା ପରେ ଆସିଲେ ପରିଜନ କେତେ ତାର
ନେଇ ତାକୁ ସାଥେ ଗଲେ ଏଠୁ ବହୁ ଦୂର
ଶୋଇ ଦେଲେ ତାକୁ ଛୋଟ ଗୋଟେ ତୋଟା ମାଳେ
ଛୋଟ ସେ ମୂଲକେ ସେଇ ପାରାବାର ତୀର ।।-୪

ସେଠି ଥିବା ଯେତେ ଜାଣିବା ଶୁଣିବା ଜନେ
ଏତେ ଭଲ କିଏ ପାଇ ନାହିଁ କେବେ ଆନେ
ଆକାଶରେ ପରୀ, ସାଗରେ ଅସୁର ନାହିଁ
କରିଦେବ ମୋତେ ସେ ମଧୁମତିଠୁ ଭିନେ ।।-୫

ସେ ଦିନୁ ଏ ଭଳି ଶଶଧର ଉଇଁ ନାହିଁ
ନ ଖୋଜି ତାହାକୁ ସପନେ ଦେବାକୁ ଛାଇ
ଆସି ନାହିଁ କେବେ ଆକାଶେ ଗୋଟିଏ ତାରା
ମଧୁମତି ଚକ୍ଷୁ ଚଟୁଳ ମଧୁ ନ ଥାଇ ।।-୬

ଆକାଶୁ ଖସିଲେ        ବରଷା ଅସରା ଧାରା
ଲହରେ ଫେନିଳ        ଦିଶିଲେ ସାଗର ବେଳା
ମଧୁମତି ମଧୁ        ତଳପ କୋଳେ ମୁଁ
    ଛୁଟାଏ ତା ଗୀତ ଧାରା;
ମୁଁ ଏକା ଜାଣେ ସେ        ଗୀତେ କି ମଦିରା ଭରା ।
ମଧୁମତି ଗୀତ --        ମୁଁ ଜାଣେ କି ମଧୁ ଝରା ॥-୭

ଲଲାଟେନ୍ଦୁ କବି ୨୦୧୭୦୫୧୯-୧୩୧୬

## ମିଠା ମିଠା ପ୍ରେମ କଥା        -012

. ମିଠା ମିଠା ପ୍ରେମ କଥା

(Sweet, Sweet Talks of Love)

ଉଠ କଥା ମାନି ମାନିନୀ
  ଗଲା ଯାମିନୀ ସରି;
ଡାକରା ହେଲାଣି ମେଲାଣି
  ଘେନି ଯିବି ସେ ପାରି | -୧
କାନେ କାନେ କହି ଯିବି ଗୋ
  ମୋର ମରମ ବ୍ୟଥା;
କାଲି କହିବନି ଗଲି ମୁଁ
  ଚାଲି ନ ବୋଲି କଥା | -୨
ନାହିଁ ତ ଗୁପତ ବିତ୍ତ ଠି-
  କଣା ଦେବି ବୁଝାଇ;
ଛୋଟ ଗପ ଛୋଟ ଖାତାରେ
  ରଖି ଅଛି ସଜାଇ | -୩
ମିଠା ମିଠା ପ୍ରେମ କଥାର
  ଖୋଲି ଦେବି ଗୋ ପେଡ଼ି;
ପ୍ରେମିକ-ଚଢ଼େଇ ଉଡ଼ିବେ

ଆଶା-ଆକାଶେ ପଡ଼ି |-୪
ପ୍ରେମିକ ପ୍ରେମିକା ଦେଖିଲେ
ଡାକି ଆଣିବ ଘରେ
ବସାଇବ ନେଇ ଦୁଇଟି
ଦଉଡିଆ ଖଟରେ |  -୫
ବୁଝାଇ କହିବ ଏବେ ସେ
ଛୁଆଁ ଛୁଇଁ ନ ହେବେ,
ହାତେ ହାତ କରି ରହିବେ
ବାହା ସରିବ ଯେବେ | -୬
ଚାହା ପାଣି ଦେଇ ଦେଖାଇ
ଦେବ ବାଡି ବଗିଚା,
କହିବ -- ଏଇଠି ତୋଳ ରେ
ଫୁଲ ଯା' ମନ ଇଚ୍ଛା |  -୭
ନେଇ ଯିବ ଫୁଲ, ତୋଳିବ
ନାହିଁ ଗୋଟିଏ କଢି,
ଆଉ କେବେ ଆସି ନେବ ରେ
ଗଲେ ସେ ଫୁଲ ବଢି  |-୮
ଫୁଲ ଫଳ ନିଅ, ଭାଙ୍ଗନା
ଡାଳ, ଧର ଯତନେ;
ଗଛଲତାଙ୍କଠୁ ନିଅ ରେ
ମାଗି ମିଠ ବଚନେ   |-୯
ଛୋଟ ଛୋଟ ଶିଶୁ ଆସିବେ
ଯେବେ ଏ ଘର ବୁଲି,
ଖେଳନା କଣ୍ଟେଇ ରଖିଛି,
ଦେବ ଡବାଟା ଖୋଲି |-୧୦
ହାତୀ ଘୋଡ଼ା ବାଘ ବିଲେଇ
ମୂଷା ଧାଡ଼ିକି ଧାଡ଼ି;
ରେଖାଯାନ ଉଡ଼ାଜାହାଜ
କୁନି ମଟର ଗାଡ଼ି |  -୧୧

କପୋତ କପୋତୀ ବଗୁଲୀ
   ବଗ ବେଙ୍ଗ ବେଙ୍ଗୁଲୀ;
ଶୁଆ ସାରୀ ବଣି କଜଳ-
   ପାତୀ କାଉ କୋଇଲି | -୧୨
କରେଇ ଡେକିଚି ମାଠିଆ
   ଗିନା ଡଙ୍କି ଖୋସଣୀ;
ପାଛିଆ ପନିକି କତୁରୀ
   ନାରୀକେଳ-କୋରଣୀ |-୧୩
ଦରାଣ୍ଡିବେ ମୋତେ ଏରୁଣ୍ଡି-
   ବନ୍ଧ ପାଖରେ ଯେବେ;
କହିବ - ବରଷେ ପରେ ସେ
   ଘରେ ଫେରି ଆସିବେ |-୧୪
ମନ ଦେଇ ପାଠ ପଢ଼ରେ
   କର ଅଳପ ରୋଳ,
ଭଲ ଫଳ କଲେ ଖୁସିରେ
   ଆସି ଯିବେ ସହଳ |  -୧୫
କହିବନି -- ଫେରି ଖେଳିବି
   ନାହିଁ ଆଉ ମୁଁ ଖେଳ;
କହିଲେ ଡରିବେ କରିବେ
   ନାହିଁ ଏଠି ଚହଳ |  -୧୬
କହିବନି ତାଙ୍କୁ ଦୁନିଆଁ
   ଦୁଇ ଦିନିଆଁ ମେଳା;
କଣ୍ଢେଇ ଧରାଇ କୁଣ୍ଢାଇ
   ଧରି କରିବ ଗେଲା |  -୧୭
ଛବି ବହି କିଣି ରଖିଛି
   ଟିକି ନାତୁଣୀ ଲାଗି;
ଜୋତା ଛତା ମୋଜା ରଖିଛି
   ଆସି ହେବନି ରାଗି ||  -୧୮

**ମିଠା କବିତା**

ରଙ୍ଗ ପେନ୍‌ସିଲ୍ ରବର
ତୂଳୀ ଭଳି ଭଳିକି;
ଆଲମାରୀ ସାରା ଭରିଛି,
ଛବି ଦେବ ସେ ଆଙ୍କି |  -୧୯
ଟିକି ଗୀତ ବହି ରଖିଛି
ସେଠୁ ଟିକି ଚଢ଼େଇ,
ଟିକି ତାରା, ଟିକି ଫୁଲର
ଗୀତ ଦେବ ସେ ଗାଇ |-୨୦
ଟିପି ଟିପି ଝରି ପଡ଼ିବ
ଯେବେ ବରଷା ପାଣି;
ଫେରି ଯାଅ ପରେ ଆସିବ –
ଗାଉ ଥିବ ନାତୁଣୀ |  -୨୧
ଖରା-ଛାଇ ସଙ୍ଗେ ବରଷା
ଯେବେ ଆସିବ ମାଡ଼ି;
ବିଲୁଆ ନନାର ବିବାହ
ଗୀତ ପଢ଼ିବ କାଢ଼ି |  -୨୨
ଟିକି ଟିକି ଆଖି ଆକାଶେ
ଦେଖି ଛୋଟିଆ ତାରା
ଖୋଲି ଦେବ ଛବି ବହିରୁ
ତା'ର ଗୀତ ପସରା |  -୨୩
ତା ତଳ ନାଡି କି ପଢ଼ିବ
ସେ ତ ବଡ଼ ଚଗଲା
ତା ଲାଗି ଆଣିଛି ଫଉଜି
ବେଶ ବନ୍ଧୁକ ଗୋଳା |  -୨୪
ଝରାବତୀ କୁମ୍ପି ଆକାଶ-
ଛଡା ବାଣ  ଫୋଟକା
ଦୀପାଳିରେ ତାଳି ମାରିବ
ଖେଳି ଚଗଲା ଟୋକା | -୨୫

ରଖିଛି ଶୀଶ୍ମାର ମୃଦଙ୍ଗ
   ଭେରୀ ନିଷଦ କେତେ,
ରାଜ-ସାଜେ ନାତି ନାଚିବ
   ତାଳି ଦେବେ ତା ମିତେ |-୨୬
ନାତି ନାତୁଣୀଙ୍କୁ ଦେଖେଇ
   ଦେବ ଆକାଶ ତାରା,
କହିବ ସେଠୁ ମୁଁ ଦେଖୁଛି
   ଆମ ଘରଟା ସାରା |      -୨୭

ଲଲାଟେନ୍ଦୁ କବି (ଜୁନ୍ ୨୦୧୬)

## ସେଇଠି କେମିତି ହେବ ଅଧା ଅଧା ?     -013

ଲିଭି ଲିଭି, ଲିଭି          ଯାଇନି ଏବେ ବି
      କଳ୍ପନା ଦୀପ ଶିଖା
ଅଳ୍ପ ହେଲେ ବି          ଲେଖୁଛି ଯା' ଅଛି
      ସ୍ମୃତିରେ ଜ୍ୟୋତିର ରେଖା ||-୧-

ପିଲା ବେଳ କଥା          ଲାଗେ ମିଠା ମିଠା
      ଅଧା ଅଧା ମନେ ହେଲେ |
ଦିଗ୍‌ବଳୟ ବି          କେଡ଼େ ମଧୁମୟ
      ଛାଇ ଆଲୁଅର କୋଳେ ||-୨-

ସେଇଥି ପାଇଁ ତ          ସୁମଧୁର ଗୀତ
      ପ୍ରଭାତେ, ସଞ୍ଜ ବେଳେ |
ଦୂର ପରିଜନ          ଖବର ମଧୁର
      ଅଧା ଲିଭା ଚିଠି ଗାରେ || -୩-

ଲିଖନ ପଠନ          ମଧୁର ଗଭୀର
      ଅଧା ଅଧା ରାତି କାଳେ |
ବଂଶୀର ସ୍ୱନ          ଜିଣି ନିଏ ମନ
      ଅଧା ଅଧା ଖରା ବେଳେ ||-୪-

ମିଠା କବିତା

ନବ ବଧୂ ମୁଖ କେଡ଼େ ମଧୁ ଦେଖ
ଅଧା ଓଢଣା ଭିତରେ |
ପ୍ରିୟା ପ୍ରତିଶ୍ରୁତି ଲାଗେ ମଧୁରାତି
ଭୀତିଭରା ପୀରତିରେ || -୫-

ସେ ପାରି ଡାକରା ଆସେ ରହି ରହି
କାନେ ପଶେ ଅଧା ଅଧା |
ଶୁଣି ଅଧା ଅଧା, ଅଧା ମୁଁ ଶୁଣେ ନା –
ସରିନି ମୋ ପାଟ ପିନ୍ଧା || -୬-

କହେ ଶାସ୍ତ୍ରଜ୍ଞାନ – ଫେରି ଯା ବହନ,
କାଢ଼ି ନିଅ ଏଠୁ ମନ |
ଛାଡ଼ି ଛାଡ଼ି, ଛାଡ଼ିଦେଇ ପୂରା ପୂରି
ପାରୁ ନାହିଁ ବନ୍ଧନ ||-୭-

ଯିବାକୁ ଆତୁର, ବେଳ ତ ଉଛୁର,
ଯିବି ଆଜି ଅବା କାଲି |
ଭୁଲିବନି କେହି, ମୁଁ ବି ଭୁଲୁ ନାହିଁ,
ଗଲେ ବି ଆସିବି ବୁଲି || -୮-

ତୁମ ସାଥେ ଏଠି ନିତି ବସି ଉଠି
ମନ ସେଠି ପର ପାରେ |
ସେଇଠି ଯାଇକି ସେଇୟା ହେବ କି?
ମନ ଥିବ ଦୁଇ ଠାରେ ? -୯-

ଗୀତ କି ସରୁଛି ? ବାକି କେତେ ଅଛି;
ସବୁ ଲେଖି ହୁଏ ନାହିଁ;
ଭାଳେ ବେଳେ ବେଳେ ଜନମ କି ମିଳେ
ମରି ହଜି ଯିବା ପାଇଁ ?-୧୦-

ଲଲାଟେନ୍ଦୁ କବି 20170428-2335

## ପ୍ରେମର ରୂପରଙ୍ଗ -014

ଯେବେ ପରଶିଲପ୍ରଣୟସଲିଳ
ପ୍ରାଣପଲ୍ଲବିନୀ ପରୀ,
ପ୍ରତେ ହେଲା ଦିନ ପଲକେ ପ୍ରଲୀନ,
ଅପ୍ରାରମ୍ଭେ ଗଲା ସରି । ୧

ପ୍ରଲୀନ= lost, dissolved

ସେ କ୍ଷୁଦ୍ର ପଲକେ ଦରିଦ୍ର ମୂଲକେ
ଉନ୍ନିଦ୍ର ଲୋତକ ବୋଲି
ତବ ପ୍ରେମୋତ୍ସଙ୍ଗେ ଦେଲି ନାନା ରଙ୍ଗେ
ଅଙ୍ଗେ ଅଙ୍ଗେ କାବ୍ୟାଞ୍ଜଳି ! ୨

ଉନ୍ନିଦ୍ର= ନିଦ୍ରାହୀନ; ପ୍ରେମୋତ୍ସଙ୍ଗ= ପ୍ରେମମୟ କୋଳ;

ବିବିକ୍ତ ପ୍ରହରେ ସେ ଗୀତଲହରେ
ମର୍ମାହତ ଗ୍ରହତାରା
ନୀଳାଞ୍ଜନା କୋଳେ ଢାଳିଲେ ସକଳେ
ଲୋତକର ବାରିଧାରା । ୩

ବିବିକ୍ତ= ବିଚ୍ଛେଦ; ନୀଳାଞ୍ଜନା= lightning, ବିଜୁଳି;

ସେହି ଅଶ୍ରୁଜଳେ ପ୍ରସିକ୍ତ ଭୂତଳେ
କଳିଟିଏ ତୋଳି ମଥା
କହେ ମା ଅବନୀ କିମ୍ପାଁ ଏ ରଜନୀ
ଅଶନିକି ଏତେ ବ୍ୟଥା ! ୪

ପ୍ରସିକ୍ତ= ଭିଜା; ଅଶନି= flash of lightning;

ବାଣୀପୁତ୍ର ୨୦୨୦୧୦୨୧୦୨୫୬

## ବନ୍ଦିନୀ ପ୍ରେମଜାଲେ -015

ଶଙ୍କିତ ନିଶା ସ୍ତମ୍ଭିତ ଦିଶା
କମ୍ପିତ ବିଭାବରୀ;
ଦେଖିବ ଏଥର ଶାର୍ବରିକର
ସ୍ୱପ୍ନର ଜାଦୁଗରି ।

ପଙ୍କିଳ ପଥ ଶଙ୍କିଳ ରଥ
ପ୍ରଶ୍ନିଳ ପଥଚାରୀ,
ମଦିରାମଗ୍ନା ଅଧୀରାଲଗ୍ନା
କଳ୍ପନା ଅସୁମାରୀ ।୨

ସ୍ପନ୍ଦିତ ମନ ଲମ୍ବିତ ବନ
ସ୍ତମ୍ଭିତ ଗିରିଶିଖା,
କୁହୁଟିକାରେ କ୍ଷୁବ୍ଧ ନିକାରେ
ନିଷ୍ପ୍ରଭ ଅତି ଫିକା ।୩

ଆକାଶ ଅବନୀ ହତାଶ, ଅଶନି-
ନିର୍ଘୋଷ ବୁକୁଥରା,
ସିନ୍ଧୁଗାମିନୀ ସତ୍ତ୍ରବାସିନୀ
ଧାବିନୀ କାମିନୀ ଖରା ।୪

ପ୍ରୀତି-ଉଚ୍ଛଳା ସଂଶିତା ବାଳା
କନ୍ଦିନୀ ହେମ ଭାଲେ,
ଓଷ୍ଠମାଧୁରୀ- ନଷ୍ଟଚାତୁରୀ
ବନ୍ଦିନୀ ପ୍ରେମଜାଲେ ।୫

ଅଧୀରା= ବିଜୁଳି; ନିକାର= ଅସମ୍ମାନ; ସତ୍ତ୍ର= ବନ; କନ୍ଦିନୀ= କନ୍ୟା; ହେମଭାଲେ= ଉଜ୍ଜ୍ୱଳ ଭାଗ୍ୟ ଥାଇ;

ଲଳାଟେନ୍ଦୁ କବି ୨୦୧୯

## ରତ୍ନ ଉତ୍ତୋଳନ (ପ୍ରଥମାର୍ଦ୍ଧ) -016

ଚଳିବ ଜଳଧି ଜଳେ
ଅଥଳ ଅତଳ ?
ତୋଳିବ ବିପୁଳ ରତ୍ନ
ଦୁର୍ମୂଲ୍ୟ ଉପଳ ? ୧ ||

ଗୋଟିଗୋଟି ମଣିମୁକ୍ତା
ଆଣିବ ଗୋଟାଇ,
ସାଗର କି କହୁଅଛି
କେବେ ନାହିଁ ନାହିଁ? ୨ ||

ଏକା ତୁମେ ଯିବ ଅବା
ଯିବ ମୋ ସାଥୀରେ ?
ଦିବସରେ ଯିବ ଅବା
ଚଳିବ ରାତିରେ ? ୩||

ଯେବେ ଯେଉଁଭାବେ
ଆସ ସାଗର ଗରଭେ
ସର୍ବ ଦିଗ ଏକାକାର
ଦେଖିବ ସରବେ । ୪ ||

ବେଳଥାଉଁ ଆସ ଭାଇ
ପାରାବାର ତୀର,
ପଶି ନ ପାରିବ ହେଲେ
ସାଗର ଅଧୀର । ୫ ||

ଯାଇ ନ ପାରିବ ଦେହୁ
ଖସି ଗଲେ ବଳ,
ବିଳମ୍ବରୁ ମିଳିଥାଏ
ଶୋଚନା କେବଳ ।୬ ||

ସାହିତ୍ୟର ଜଳଧରେ।
ରୁଚିର ଶବଦ,
ନୁହଁ କି ସେ କୋଟିନିଧି,
ଜାତିର ସମ୍ପଦ ? ୭॥

ଲଲାଟେନ୍ଦୁ କବି ୨୦୧୯୦୧୨୫

**ରତ୍ନ ଉତ୍ତୋଳନ** (ଦ୍ୱିତୀୟାର୍ଦ୍ଧ)

ଏହି ପାରାବାର ନୁହେଁ
ସେତେ ଭୟଙ୍କର,
ଶୁଣା ନାହିଁ ନାଶିବାର
କେବେ ନାରୀନର ।୮॥

ତଥାପି ଯିବାକୁ ଲାଗେ
ଅଦମ୍ୟ ସାହସ,
ପ୍ରବେଶନ୍ତି ନାହିଁ ତହିଁ
ଭୀତ ବୀତରସ । ୯॥

ଯେଉଁ ସିନ୍ଧୁ ତୀରେ ସଦା
ବୀଣାର ଝଙ୍କାର,
ନିର୍ମଳ ନିର୍ମୋକ ଚୂଳେ
ଜଳଦ ମହ୍ଲାର, ୧୦॥

ସେହି ବାରିଧିର ଧୀର
ଶାନ୍ତ ବୀଚିମାଳା,
ମଧୁଝରା ସଂଗୀତର
ଆଦି କର୍ମଶାଳା ।୧୧॥

ଅତଳ ତଳପେ ସେହି
ଜଳେଶ ଗରଭେ
ବର୍ଣ୍ଣୋଜ୍ଜ୍ୱଳ ମୁକ୍ତାମାଳ
ଅତୁଳ ସରବେ । ୧୨॥

ବାଣୀମାତା ବୀଣା ଧରି

ସେ ଅର୍ଣ୍ଣବ କୂଳେ

କରନ୍ତି କରସ୍ପର୍ଶନ

ଚକ୍ରପକ୍ଷ ଚୂଳେ । ୧୩॥

ସେହି ମହାଶୟେ ମହା

ହେମାଳ ତଳପେ

ମାଳମାଳ ଶବ୍ଦରତ୍ନ

ମଣ୍ଡନ ଜଳପେ । ୧୪॥

ଆସ କେ କରିବ ସେହି

ରତ୍ନ ଉତ୍ତୋଳନ,

ସାରସ୍ୱତ ଊର୍ମିମାଳା

ଗର୍ଭେ ଉଲ୍ଲଙ୍ଘନ । ୧୫॥

*ଜଳଧି, ସାଗର, ପାରାବାର, ସିନ୍ଧୁ, ବାରିଧି, ଜଳେଶ, ଅର୍ଣ୍ଣବ, ମହାଶୟ, ଊର୍ମିମାଳା= ସମୁଦ୍ର; ନିର୍ମୋକ= ଆକାଶ; ଜଳଦ= ମେଘ; ବାଣୀମାତା= ସରସ୍ୱତୀ; ଚକ୍ରପକ୍ଷ= ହଂସ; ତଳ୍ପ= ଶଯ୍ୟା; ଉଲ୍ଲଙ୍ଘନ= ଲମ୍ଫପ୍ରଦାନ;*

ବାଣୀପୁତ୍ର ଲଲାଟେନ୍ଦୁ କବି:  ୨୦୧୯୦୯୦୭୧୫୨୦

## ବୈତାଳିକର ପ୍ରେମବୃତ୍ତ -017

କାହିଁ ସେ ବାଳିକା   ଯା ଗଳେ ମାଳିକା

ବୈତାଳିକ ! ଦେବ ତୋଳି,

ଈପ୍ସିତା ନାୟିକା   ପ୍ରୀତୀଶାଦାୟିକା

ଯାଠି ପ୍ରେମ ଦେବ ବୋଲି?  ୧

(ବୃତ୍ତ= affair; ଈଶା= ଶକ୍ତି; ବୈତାଳିକ= ଜାଦୁକର;)

ସେ କେଉଁ ଅରଣ୍ୟେ   ଅବା ନିକାଞ୍ଜନେ

କେଉଁ ପୁରେ ଥିବ ନାରୀ,

ଗଜ କି ଚଳିବ,   ତା ଶିରେ ଢାଳିବ

ସୁବର୍ଣ୍ଣ କଳସ ବାରି ?  ୨

ଅଳ୍ପ ଅଳ୍ପ କରି          କଳ୍ପନାର ତରୀ
        ଜଳମଗ୍ନ ହେଲା ପରି,
ଢଳି ଯିବ ଆଶା,          ତେଜି ମୋହଭାଷା
        ଲଜ୍ଜଯୋଷା ନିଅ ବରି । ୩

ଦେଖ ବିଦ୍ୟାବ୍ରତ          ପୃଷ୍ଠତଃ ପର୍ବତ-
        ପୟରେ ପାର୍ବତ୍ୟ ବାଳା;
ପ୍ରେମିକଟେ ପାଇଁ          ରହିଛି ଅନାଇଁ,
        ତା ଗଳେ ଦେବ କି ମାଳା ?     ୪
(ବିଦ୍ୟାବ୍ରତ= ଜାଦୁକର;)

ନୟନେ ନୟନ          ରଖି ବେନି କ୍ଷଣ
        ପାଶେ ତାର ହୁଅ ଠିଆ;
ସାହସ ସଞ୍ଚାରି          ପଚାର ବିଚାରୀ
        ହେବ କି ତୁମର ପ୍ରିୟା |  ୫

ତା ବକ୍ଷେ ଶୋଭିତ          ଆଭର୍ମ ଲମ୍ବିତ
        ଦୁର୍ଲଭ ମନ୍ତ୍ରିତ ମାଳି;
ଜନକ-ସ୍ନେହିତା          ବିଜାତାବଞ୍ଚିତା,
        ଅତି ଏକାକିନୀ ବାଳୀ |  ୬
(ଭର୍ମ= ନାଭି; ବିଜାତା= ମା;)

ଲଲାଟେନ୍ଦୁ କବି   ୨୦୨୦୧୨୧୪୧୨୨୫

## ଲୁମ୍ବିନୀର ଅଭିଷେକ          -018

ଲୁମ୍ବିନୀ -- କାନନେ          ଚୁମ୍ବି ନିକାଞ୍ଚନେ
        ଶତ ଭାମିନୀ          ସଙ୍ଗସୁଖ
        ଏବେ ନୁହଁ କି          ପ୍ରେମୋତ୍ସୁକ ?  ୧
*ଭାମିନୀ= passionate woman;*

## ମିଠା କବିତା

ଘନ ନିଷଦ୍ବରେ ରତିସୁଖ ପରେ
କିଆଁ ନିଗୂଢ ସତ୍ୟେଚ୍ଛୁକ ?
ପ୍ରେମ-ପାଶେ କି ପରାଙ୍ମୁଖ ? ୨

*ନିଷଦ୍ବର= night;*

ପ୍ରଲମ୍ବିତ ମୁଖେ ପ୍ରକମ୍ପିତ ବୁକେ
ରହି ନିରତ ମଗ୍ନମତି
ହେବ ଉପାର୍ଦ୍ଧ- ନଗ୍ନ ଯତୀ ? ୩

*ପ୍ରଲମ୍ବିତ= ତଳକୁ ଝୁଲୁଥିବି; ଉପାର୍ଦ୍ଧ= half;*

ଏ କେଉଁ ବିବେକ ତେଜି ଅଭିଷେକ,
ମାତା ବିଜାତା ଜନ୍ମଦାତା,
ହେବ ଅଧୀର ଧର୍ତ୍ରେ ଧାତା ? ୪

*ବିଜାତା= ପାଳିକା; ଅଧୀର= confusing; ଧର୍ତ୍ର= ଘର, କୁଟୀର;*

ନୀରଞ୍ଜନା ତଟେ ନୀଳାଞ୍ଜନା ଛଟେ
ଚିତ୍ତେ କି ମେଘ ବିସ୍ଫୁର୍ଜନ?
କହ, ସୌମ୍ୟ ସ୍ତବ୍ଧ ଜନ । ୫

*ନୀଳାଞ୍ଜନା= ବିଜୁଳି; ବାର୍ଦ ବିସ୍ଫୁର୍ଜନ= ମେଘ ଗର୍ଜନ;*

ତେଜି ରାଜବାସ ନିରଞ୍ଜନା ପାଶ
ଆ ଗୋ କୁଳୀନ ଆଗନ୍ତୁକ,
କିମ୍ପାଁ ମଳିନ ଚନ୍ଦ୍ରମୁଖ ! ୬

ଲଲାଟେନ୍ଦୁ କବି ୨୦୨୧୦୨୨୧୦୧୧୨୧

## ସନ୍ଧ୍ୟାତାରା -019

ଭୀଷିତ ଲଗନେ ନିଶୀଥ ଗଗନେ
ଆସି -- ତୃଷିତା ସନ୍ଧ୍ୟାତାରା,
କିଆଁ -- ଜଳାଅ ରାତ୍ରି ସାରା |
ଲକ୍ଷ୍ୟ କର ତୁମେ ଧ୍ୱସ୍ତ ରଙ୍ଗଭୂମେ
ମୋର - ଧୂମିତ ଅନ୍ଧ କାରା,
ଏ ତ -- ଈଷତ ରଶ୍ମି ଧାରା | ୧

ଭୀଷିତ= frightened; ଧୂମିତ= dark;

ବର୍ଷ ବର୍ଷ ଧରି ଅହର୍ଷ ଶର୍ବରୀ
ବିତି -- ଯିବାରେ ବିଶ୍ୱ ପରେ,
ଏବେ -- କି ଦେବ ନିଃସ୍ୱ ନରେ !
ମେଘେ ଘଡଘଡି ହେଲେ ଆର ଘଡି
ତୁମେ -- ଚଳିବ ଅଦ୍ରି ପାରେ,
ଏକା -- ଥିବି ମୁଁ ଅନ୍ଧିକାରେ | ୨

ଅହର୍ଷ ଶର୍ବରୀ= unpleasant nights; ଅଦ୍ରି= mountain; ଅନ୍ଧିକା= night;

ଅଭିଶପ୍ତ ଭାଳେ ଦମ୍ଭୀ ଶକ୍ରଜାଲେ
ସଦା -- ରଭସ ଆସ୍ୱାଦନ
କଲା -- ବୟସ ଆଚ୍ଛାଦନ !
ଶେଷ ଯାତ୍ରାରଥ ହେବ ପ୍ରତ୍ୟାଗତ,
ବେଗେ -- ହେବ ମୋ ବିସ୍ଥାପନ,
କେତେ -- ଦେବ ଗୋ ନିର୍ଯାତନ !୩

ଦମ୍ଭୀ=deceiver; ଶକ୍ରଜାଲ= magic; ରଭସ= poison; ପ୍ରତ୍ୟାଗତ= arrived; ବିସ୍ଥାପନ= displacement;
ଲଲାଟେନ୍ଦୁ କବି ୨୦୧୯୦୫୦୧୦୫୦

**କବିତା** -020

.
କବିତା ଗୋ ତବ ଚଞ୍ଚଳ ପଦ ନୂପୁର ମାଳା
ରୁଣୁ ଝୁଣୁ ଝୁଣୁ ଝଙ୍କାର ଯେବେ ତୋଳେ
ଲକ୍ଷ ଜୀବନେ ଯୌବନ ରଚେ ଖେଳା
କଳ୍ପନା ଭରା ଆତୁର ନୟନ ଜଳେ || -୧-

ହଜିଲା ସେ କେଉଁ ସୁଦୂର ଅତୀତ ରାଜ୍ୟେ ପୁଣି
ତୁମରି ସ୍ରୋତରେ ଭାସିଯାଇ କିଏ ଉଭା
ବିଦ୍ୟୁତ୍ ସମ କ୍ଷିପ୍ର ତୁମର ନୟନ ଠାଣି
ଦେଖି ଚଞ୍ଚଳ ବାଳକ ବୃଦ୍ଧ ଯୁବା || -୨-

**ମିଠା କବିତା**

ସକାଳ ସଞ୍ଜେ ପକ୍ଷୀର ମଧୁ-ତରଳ ଗାନେ
ଶିଳ୍ପୀ ରୂପରେ କବିତା ଗୋ ତୁମ ଦେଖା,
ବାସର ହସଇ ଗୋପାଳ ବାଳକ ବଂଶୀ ତାନେ
କାନିରେ ତୁମର ଶିଶୁର ନିଦ୍ରା ରଖା || -୩-

ନିର୍ଜନ ମୁଁ ବା ମରୁ ପ୍ରାନ୍ତର ପଥିକ ଏକ
ଅସୀମ ଜୀବନ-ପଥେ ନାହିଁ କେହି ସାଥୀ,
ଶୂନ୍ୟ କୁଟୀରେ ହୃଦୟ ଶୂନ୍ୟ ଲାଗେ ଅନେକ,
ଚଉପାଶେ ଖାଲି ରୁକ୍ଷ ପ୍ରାଚୀର ଛାତି || -୪-

ତୁମେ ଗୋ କବିତା ଅଜାଣତେ ମୋର ଉଠିଲେ ହସି
ଉଦ୍ୟାନ ସମ ହସେ ଏ ରୁଦ୍ଧ କାରା
ଝରୁ ହେ ତୁମରି ଆଶିଷ-ପୀୟୂଷ ରାଶି କି ରାଶି
ସଙ୍ଗୀତମୟ ହେଉ ଏ ଜୀବନ ସାରା || -୫-

.
ଲଲାଟେନ୍ଦୁ କବି     ୨୭ ନଭେମ୍ବର ୧୯୭୫

## ଛୋଟିଆ ବ୍ୟଥା -021

ତୁମେ ଯେବେ ଆସ     ଭୁଲି ମୋ ବୟସ
    ମୁଁ ବି ଛୋଟ ହେଇ ଯାଏ,
ହୁଏ ନାହିଁ ଜାଣି     କିଏ ବେଶି ପୁଣି
    କିଏ ଊଣା ଭଲ ପାଏ | ୧

ଶରଧାରେ ତୋଳି     ହାତେ ଦେଲା ଭଳି
    ମୋ ଜୀବନେ କିଛି ନାହିଁ;
ଖୁସି ହେବ କାଳେ     ଗୀତଟେ ଲେଖିଲେ
    ଦେଉଛି ପଢିବା ପାଇଁ | ୨

ନୁହେଁ ସେହି ଗୀତ     ରକ୍ତ ପାରିଜାତ,
    ସେ ତ ତୁଚ୍ଛା ଘାସ ଫୁଲ,
ସେଇଥିରେ ଅଛି     ଶରଧାରୁ କିଛି,
    ସେହି ଏକା ତାର ମୂଲ | ୩

ସେ ଫୁଲ ମାଳିକା ବାଳକ ବାଳିକା
ନିଅ କେତେ ନେବ କିଏ,
ଜାଣିଛ ତୁମେ ବି କି ଆଉ ମୁଁ ଦେବି,
ଛୋଟିଆ ମଣିଷଟିଏ | ୪

ଛୋଟ ମୋ ସଂସାର, ଛୋଟ ପଥଧାର,
ଛୋଟିଆ ଆଶାର କଥା:
ଅଳପ ଶୟନ, ଛୋଟ ମୋ ସପନ,
ଛୋଟିଆ ଛୋଟିଆ ବ୍ୟଥା | ୫

ଲଲାଟେନ୍ଦୁ କବି ୨୦୧୯୦୩୩୦୧୨୪୭

କ

## କି ଲାଗି ପଢିଲ ତୁମେ -022

ଗୋପନେ ଯା‘ ରଖି ଆସିଥିଲି ସଖି
ପ୍ରୀତିସିନ୍ଧୁ ବେଳାଭୂମେ
ଲେଖି ରଖିଥିଲି ପଢିବି ମୁଁ ବୋଲି
କି ଲାଗି ପଢିଲ ତୁମେ ? ୧ ||

ମୋର ଅଶ୍ରୁଧାର ସେ କବିତା ଗାର,
କିଆଁ କଲ ହୃଦଗତ?
କି ଲାଗି ସେ ଦିନୁ ପୋଛୁ ନାହଁ ମନୁ
ସେହି ସିନ୍ଧୁ ସଇକତ ? ୨ ||

ପାରାବାର ତୀରେ କିଆଁ ଆସି ଧୀରେ
ଗହନ ତିମିର କୋଳେ
ଧୀରେ ପାଦ ଥୋଇ ଆଖି ଦିଅ ଧୋଇ
ହେମାଳ ଜଳଧି-ଜଳେ ? ୩ ||

## ମିଠା କବିତା

କି ଲାଗି ନିରାଶେ        ଖୋଜ ମୁକ୍ତାକାଶେ
        ହଜିଗଲା ସଞ୍ଜତାରା?
କି ଲାଗି ଗୁଞ୍ଜରି          ମୋ ଗୀତି ମଞ୍ଜରୀ
        ନୟନୁ ଝରାଅ ଧାରା ? ୪ ||

ଦୂରୁ ଦେଖେ ଯେବେ      ବିଜନେ ନୀରବେ
        ମୁ ବି ଝୁରି ମରୁଥାଏ;
ସହି ପାରେ ନାହିଁ        କହି ପାରେ ନାହିଁ
        ରହି ପାରେ ନାହିଁ, ହାଏ । ୫ ||

Lalatendu ୨୦୧୮୦୧୦୬-୨୦୧୫

## ଅକୁହା କବିତା                -023

ଝାଙ୍କି ଝାଙ୍କି ଆସିଲାଣି ଆଖି;
ଜଳି ଜଳି ଚାଲିଛି ସଳିତା;
ସାରି କେବେ ପାରିବି କି ଲେଖି
ମୋ ଜୀବନ ଅଲୋଡ଼ା କବିତା ||-୧

ଜଣେ ଜଣେ ପଡ଼ିଲେଣି ଶୋଇ
ସାଙ୍ଗ ସାଥୀ ଅଡ଼ିଶା ପଡ଼ିଶା;
କିଏ କିଏ ରହିଛନ୍ତି ଚେଇଁ
ଉଜାଗରେ କାଟିବାକୁ ନିଶା ||-୨

ସରି ସରି ଆସୁଅଛି ତେଲ;
ଲିଭି ଲିଭି ଆସିବାରେ ଦୀପ
ଦୀପଶିଖା ହୁଏ ହଲ ଚଲ,
ତେଲ ଟାଣେ ଅଳପ ଅଳପ ||-୩

ଯୋଡ଼ି ଯୋଡ଼ି ଅକ୍ଷରେ ଅକ୍ଷର,
ଖଞ୍ଜି ଖଞ୍ଜି ଶବଦେ ଶବଦ,
ଆଙ୍କି ମାତ୍ରା, ଫଳା, ଯୁକ୍ତାକ୍ଷର,
ଲେଖୁଛି ମୁଁ ପାଦ ଯୋଡ଼ି ପଦ ||-୪

କିଛି କିଛି ରାତି ଅଛି ବାକି,
କିଛି କିଛି ଆସୁଛି ଭାବନା;
ଆଗପଛ, କଟାକଟି ଦେଖି,
କରୁଛି ମୁଁ ଲେଖନୀ ଚାଳନା ||-୫

ଫାଟି ଫାଟି ଆସୁଛି ସିନ୍ଦୂରା,
ଫୁଟି ଫୁଟି ଆସୁଅଛି ଫୁଲ;
ବାହାରିବ ଏବେ କୁଆଁତାରା,
ବାଟ ଘାଟ ଦିଶିବ ଉଜ୍ଜ୍ୱଳ ||-୬

ନୂଆ ଗୋଟେ ଆସି ଯିବ ଦିନ
ଝାଡ଼ି ଝୁଡ଼ି ରଖି ଦେବି ଖାତା;
ରାତିକେ କି ହେବ ସମାପନ
ଜୀବନର ଅକୁହା କବିତା ?-୭

ଲଲାଟେନ୍ଦୁ କବି
୨୦୧୬୧୨୨୦-୦୬୪୫

## ଲିଭି ଲିଭି ଚାଲିଛି ସଳିତା -024

ଆସ ଆସ ମୋର ସାଥୀ
ମାଡି ମାଡି ଆସେ ରାତି
ଏକା ଏକା କି ମୁଁ ଲେଖିବି କବିତା ଗୋ ?
ମୋର ଲିଭି ଲିଭି ଚାଲିଛି ସଳିତା ଗୋ !-୧

ସଞ୍ଜ ଗଲା ବୁଡି ବୁଡି
ଘର ଦେଲି ଝାଡି ଝୁଡି
ଏବେ ବସିବି ମୁଁ ପଥ ଚାହିଁ ଚାହିଁ ଗୋ,
ଦୂରୁ ଅତିଥି କେ ଆସିଲେ କି ନାହିଁ ଗୋ !-୨

ଗଲା ଖରା ଝାଇଁ ଝାଇଁ
ନିଶା ଡାକେ ସାଇଁ ସାଇଁ,
ଏବେ ଡର ମାଡେ ଦେଖି ନିଜ ଘର ଗୋ;
ଆପ- ଣାର ଲାଗିଲେଣି ପର ପର ଗୋ |୩

କବି-   ତାର ଗାରେ ଗାରେ
ତାନ-   ପୁରା ତାରେ ତାରେ
ବିନ୍ଦୁ   ବିନ୍ଦୁ ବହେ କାହା  ଅଶ୍ରୁ ଧାରା ଗୋ;
ନିଆଁ   ଲାଗି ଯାଏ ମରମଟା ସାରା ଗୋ |-୪

ଏଇ   ଦାଣ୍ଡ ବାରଣ୍ଡାରୁ
ଦୂରୁ   ଦିଶେ ଦେବଦାରୁ
ଗୋଟେ ଭୂତ  ପରି ଡାକେ ହାତ ମେଲି ଗୋ,
ଟିଖେ   ଡେରି କଲେ ଚମ ଦେବ ଛେଲି ଗୋ |୫

କହ   କାହା ଭରସାରେ
ଘନ   ଘୋର ବରଷାରେ
ଦୂର   ଦେଶେ ଯିବି ଏକା  ଦିଅଁ ଦେଖି ଗୋ,
ଦେବ   ଅଧାରୁ ମୋ କବିତା କେ ଲେଖି ଗୋ? ୬

ଦିଅ   ଦିଅ ଟିକେ ଘିଅ
ମୋ ସ ଳିତା ତେଜି ଦିଅ,
ରାତି   ଥାଉଁ ଯିବି, ଲେଖା ଦିଏଁ ସାରି ଗୋ,
ସାଥେ  ଯିବ କିଏ ? ହେବି ପଥଚାରୀ ଗୋ !-୭

ଲଲାଟେନ୍ଦୁ କବି  ୨୦୧୭୦୮୩୧-୦୧୫୬

## ଅସନା ପାଣି -025

ଢାଳୁଥିଲି ଆମ ଅଗଣାଟାରେ
ଅସନା ପାଣି;
ତାକୁ ପି'ଇ ଖେଳି ଉଠିଲା ଗୋଟେ
ଲତିକା ରାଣୀ ||  -୧

ଲତା କୋଳେ ଫୁଟି ହସିଲା ଅପ-
ରୂପା ମଞ୍ଜରୀ;
ଲତାରାଣୀ ଝିଅ ରାଜଦୁଲଣ
ଫୁଲ-କୁମାରୀ ||   -୨

କଳିକା ଦେଖି ମୁଁ ଲେଖିଲି ଦିନେ
କବିତା ଖିଏ
ସେ କବିତା ପଢ଼ି ପଡ଼ିଲା ଭାଜି
ବନିତାଟିଏ ||  -୩

ପଢ଼ି ମୋ କାହାଣୀ ଝରିଲା ତାର
ନୟନ ବାରି;
ଲେଖନା ଏ ଭଳି ଦରଦୀ ଗୀତ-
କଲା ଗୁହାରି ||  -୪

ହାତ ଧରି ତାର ଦେଲି ଯେ ପୋଛି
ନୟନ ନୀର;
ସକେଇ ସକେଇ ଶୋଇଲା ଥୋଇ
ମୋ ପରେ ଶିର || -୫

ଘଡ଼ିକେ ଲାଜେଇ ଉଠିଲା ଯେବେ
କହିଲା କାନେ
ମୋତେ ରଖିବ କି ନିଜର କରି
ତୁମ ଜୀବନେ ||  -୬

ସେ ଦିନୁ ବଢ଼ିଲା ପୀରତି ହେଲା
ସେ ମୋ ଦୟିତା;
ବାହାହେଇ ଦିନେ ମୋ ଘରେ ପୁଣି
ହେଲା ଯୋଷିତା || -୭

ଆଜି ସିଏ ଛାଡ଼ି ଯିବାରେ ଯେତେ
ଢାଳିଲେ ନୀର,
ଅଗଣା ପଡ଼ିଛି ଟାଙ୍ଗରା, ଖାଲି
ଦିଶେ ପଥର ||  -୮

ଗଲାଣି ବୟସ ପାରୁନି ଢାଳି
ବେଶି ମୁଁ ପାଣି;
ଅଳପ ଅଳପ ଦେଇ କି ଲାଭ
ହୁଏନା ଜାଣି ||  -୯

ସେ ଜଳେ ଉଠେନା ଲତା କି ଫୁଲ
ଫୁଟେନା ଆଜି,
ଫେରେନା ମାନିନୀ ଲଳନା ମୋର
ଖେଳନା ସାଜି || ୧୦

ଲଲାଟେନ୍ଦୁ କବି ଶ୍ରୀ ହରିଶ୍ରଣମ୍ ୨୦୧୭୦୩୦୮-୦୪୧୫

**ରକ୍ଷାବନ୍ଧନ** -026

କା ପାଖୁ କର୍ମ ଜଞ୍ଜାଳେ କିଏ ଯିବେ ଦୂରେ,
କେ ଜାଣେ ବିଦାୟ କିଏ ନେବ କେଉଁ ପୁରେ ।
ଏ ଜୀବନେ ଆଉ ଦେଖା ମିଳିବ କି ନାହିଁ,
କେ ହାରିବ ନେତ୍ରଜଳ କାହା ପଥ ଚାହିଁ । ୧

କେ କେତେ ଝୁରିବେ କାରେ ସ୍ମରି କେଉଁ କଥା,
କାହାର ଛାତିରୁ କେତେ ବାହାରିବ ବ୍ୟଥା ।
ବୟସ ଯାଉଛି ବଢି ସ୍ମୃତି ପଡେ ଫିକା,
କେ ଜାଣେ ଲିଭିବ କେବେ କା ଜୀବନଶିଖା ।୨

ଯତନେ ସଜାଇ ଟିକି ସୂତ୍ରିକା ବନ୍ଧନ
ଭଗ୍ନୀ କରେ ଭାଇ ପାଶେ ରକ୍ଷା ନିବେଦନ ।
ହେଇ ପାରେ ଜୀବନରେ ଏହି ଶେଷ ଦେଖା,
ସେହି ସୂତ୍ରେ ଶତାବ୍ଦୀର ଥିବ ପ୍ରୀତି ଲେଖା । ୩

ଲଲାଟେନ୍ଦୁ କବି
୨୦୨୨-୦୮-୧୧/୧୭:୪୫

**ଉଠ ଉଠ ସୁନା ପୁଅ** -027

ପୂରୁବ ଆକାଶେ ସୂରୁଜ ଆଭାସେ,
ଉଠ ଉଠ ସୁନା ପୁଅ,
ପରବତ ତଳେ ଝର ଝର ଜଳେ
ମରକତ ଝରା ସୁଅ | ୧

ଗହୀର ବିଲରେ ସମୀର ଲହରେ
ସୁନା ଗଛ ଯାଏ ନଇଁ,
ସୁଜଳ ଫୁଟିଲା ଦୃଗ୍ଜଳ ଛୁଟିଲା,
କାନ୍ଦି ଶୋଇ ଗଲା କଇଁ | ୨

ବନ୍ଧୁ ପରିଜନ ଚଳିଲେ ଗଗନ
ଯିବେ ବୋଲି ଦୂରେ ଦୂରେ,
ଏକଇରବଳା କଟିର ମେଖଳା
ରହିଲୁ ସପନ ପୁରେ | ୩

ଆଜି ନିଶୀଥରେ ଗାଇବି ଗୀତରେ
ଉଠି ପଡ ଅମାନିଆଁ;
ମରମ କୁହରେ ଗରମ ଲୁହରେ
ଲିଭିବ ନାହିଁ ରେ ନିଆଁ | ୪

ଲଲାଟେନ୍ଦୁ କବି ୨୦୧୯୦୪୨୦୧୭୧୦

. ତୁମେ ଫେରିବାରେ -028

ତୁମ ଫେରିବାରେ ବାଡି ବଗିଚାରେ
ଫୁଟିଲାଣି ନାନା ଫୁଲ,
ସେ ଫୁଲପତରେ ଶରତ ଶୀତରେ
ଚିତ୍ରପତଙ୍ଗ ବାତୁଳ !୧

ତୁମେ ଥିଲ ଦୂରେ ତେଣୁ ଶୋକାତୁରେ
ଆସିଥିଲା ପତ୍ରଝଡା,
ଫେରିଆସିବାରେ ସୁଷମା ସମ୍ଭାରେ
ଫୁଲେ ପତ୍ରେ ମନ୍ତ୍ରପଢା ।୨

ଶୁଣି ତୁମ ପଦ ନୂପୁର ଶବଦ
ବିହଙ୍ଗମ ଗାଏ ଗୀତ,
ସେ ଗୀତି ଲହରେ ଏ ଟିକି ସହରେ
ସମୀରଣ ଆନ୍ଦୋଳିତ ।୩

କିଲାଗି ଅସୀମ ଭାବ ଅପ୍ରତିମ
ମୋଲାଗି ରଖିଛ ମନେ,
କେତେ ରୂପବନ୍ତ ଥାଉଁ ଅନୁରକ୍ତ
ତୁମ ପ୍ରେମେ ଏ ଭୁବନେ ।୪

ଯୌବନ ପ୍ରଥମ ଅଙ୍କୁର-ଉଦ୍ଗମ
ଅର୍ଘ୍ୟ ଢାଳିଦେଲ ସଖି !
ଭାବି ଲାଗେ ଡର ସେହି ବିଶ୍ବାସର
ମାନ କି ପାରିବି ରଖି ।୫

ଊଣା କେବେ ମନ ନକର ବହନ
ନୁହେଁ ଅର୍ହତ୍ତମ ବୋଲି,
ମୋ ହୃଦସଦନ ରଖିଥିବି ଧନ
ତୁମଲାଗି ପ୍ରେମ ବୋଳି ।୬

୨୦୧୮୦୮୦୩୧୬୨୯
ତିତ୍ତ୍ରପଡଙ୍ଗ= ପ୍ରଜାପତି,ଃ; ସମ୍ଭାର= ସମ୍ପଦ, ଅର୍ହତ୍ତମ= ଯୋଗ୍ୟତମ

## ପ୍ରୀତିର ଅନ୍ତିମ ଗୀତି -029

ପ୍ରୀତିରେ କି ଥାଏ ରୀତି
କେ ଜାଣେ କାହାର କିଏ
କା ଘରେ ଜଳିଲେ ବତୀ
କିଏ ସେ ଆହୂତି ଦିଏ। -୧

କେ କାହା ସପନ ସାଥୀ
କିଏ କା ନୟନ-ତାରା;
କା ଲାଗି କେ ପାଏ ଭୀତି
କିଏ କା ଦୁଃଖ-ପାସୋରା। -୨

ବିଜନେ କେ ଭାଳେ ବସି
କିଏ ଯାଏ ଦେବାଳୟ,
କିଏ ଢାଳେ ଅଶ୍ରୁରାଶି
କାହାର ଜଳେ ହୃଦୟ |  -୩

କିଏ ଖୋଜି ବୁଲେ ନିତି
କିଏ କାହିଁ ଝୁରି ମରେ;
କେବେ କା' ଜୀବନ-ସାଥୀ
ଯାଏ ଚାଲି ଦୂରେ ଦୂରେ | -୪

କିଏ ମନ ଦିଏ ଢାଳି
କିଏ ସେ ତା ମନ ନିଏ
ନିଶିଥେ ଦୀପାଳୀ ଜାଳି
କେ ଲେଖେ କବିତାଟିଏ | -୫

କିଏ ଦେଇ ରାଗ ତାଳ
ସରଜିଲା ପ୍ରେମଗୀତ;
ବାଢ଼ି ଆଦି ଅର୍ଘ୍ୟ ଥାଳ,
ଢାଳି ଦେଲା ତା ରକତ | -୬

ପ୍ରେମଗୀତ  କେତେ କାଳ?
ଶେଷ କେବେ ହେବ ତାର ?
ଲେଖି ତା ଶେଷ  ଅକ୍ଷର
କେ ଆଙ୍କିବ ଶେଷ ଗାର | -୭

ପୂଜିବି ତାହାକୁ ଦିନେ
କହି ଦିଅ ନାମ ତାର;
କିଏ ସେ କୁଳଚନ୍ଦ୍ରମା
ଭବିଷ୍ୟତ ବଂଶଧର | -୮

ଲଲାଟେନ୍ଦୁ କବି ୨୦୧୭୦୪୨୬-୧୨୨୦

## ମିଠା କବିତା

## କନ୍ୟା ବିଦା ପରେ -030

ସୁନାଝିଅଟିକି ଶାଶୁଘରଠିକି
ବିଦା ଯେ କରୁଛ ପିତା,
ଜନନୀର ଆଖି ବର ଦେଖିଲା କି,
ବୋହୂ ବେଶର ଦୁହିତା ? ୧||

ଚୁଡି ଶଙ୍ଖା ଶାଢୀରଖନ୍ତା ସଜାଡି
ଦେଖନ୍ତା ତା ଶାଶୁଘର;
ଯେତେ ଦୂରେ ଥିଲେ ଯେ ଭାବେ ରହିଲେ
ମାତା ତ ହୁଏ ନା ପର || ୨||

ସାତ ଅହିଅରେ ମୁଖିଆ, ହାତରେ
ଧରନ୍ତା ଝିଅର କାନି,
ହୁଳହୁଳି ଦେଇ ଦିଅନ୍ତା ଗାଧେଇ
ଢାଳି ସେ ହଳଦୀ ପାଣି || ୩||

ଦେଖନ୍ତା ଆଶାର ସୁନାର ସଂସାର,
ଦୁହିତା କୁଳ ନନ୍ଦନ;
କେବେ ପରବରେ ଡାକି ବାପ ଘରେ
ଦିଅନ୍ତା ପରଶା ଅନ୍ନ || ୪||

ଦେଖି ସେ ବିଜନେ ବିହର୍ଷ ବଦନେ
ବାହା ବେଦୀ କୋଳାହଳ,
ଶୁଣି କନ୍ୟାଦାନବେଦମନ୍ତ୍ର ଗାନ,
ନୟନ ଥିବ ଉଚ୍ଛଳ || 5||

ବିବାହ ଦିବସେ ଜନନୀ ବିବଶେ
ଢାଳି ଚାଲିଥିବ ଲୁହ;
ଏ କଥା କି ଥରେ କେବେ ଏକାନ୍ତରେ
ଭାବିଥିଲ, ସତ କୁହ || ୬||

କନ୍ୟା ବିଦା ପରେ ଶୂନ୍ୟ ଏହି ଘରେ
କି କରିବ ଏକା ଏକା ?
ହେଜ ଦୂରଗତା ସଙ୍ଗିନୀର କଥା,
ସପନେ ପାଇବ ଦେଖା || ୭||

ହେଜ ଦିନ ରାତି, ଆସୁଥିବ ସାଥୀ
ଶୁଭାଶୁଭ ବୁଝିବାକୁ;
ଝିଅ ମୁହଁ ଚାହିଁ ଥିଲ ଭୁଲି ଯାଇ,
ଏବେ ତ ଭଜିବ ତାକୁ || ୮||

ଲଲାଟେନ୍ଦୁ କବି
୨୦୧୭୧୧୧୦ -୦୧୧୦

## ଆଦି-ପ୍ରେମଗୀତ-କବି -031

ସୃଷ୍ଟି ଆଦି ପ୍ରେମଗୀତ କେ ଲେଖିଲ କେ ତୁମେ ଅଜଣା କବି?
କେଉଁ ଭଙ୍ଗିମାରେ ବସି ଲେଖିଥିଲ କି ଥିଲା ପ୍ରକୃତିଛବି ? ୧

ପ୍ରଭାତେ ପ୍ରଦୋଷେ ସାୟଂକାଳେ ଅବା ଲେଖିଲ ରାତି-ଅନ୍ଧାରେ
କେଉଁ ଲେଖନୀରେ ଲେଖିଲ ତାହାକୁ ବସି କେଉଁ ଭୂମି ପରେ? ୨

କେଉଁ ଛନ୍ଦ ସ୍ୱର ଦେଇ ଲେଖିଥିଲ, କି ଥିଲା ତା ତାଳ ଲୟ?
ବିରହ ମିଳନ ପ୍ରେମ-ନିବେଦନ କି ଥିଲା ମୁଖ୍ୟ ବିଷୟ? ୩

କି ଥିଲା ଅନିଳେ ଏ ମହୀମଣ୍ଡଳେ କି ଥିଲା ସାଗରଜଳେ?
କେଉଁ ପକ୍ଷୀସ୍ୱନ ଆସୁଥିଲା ଭାସି ସେ ଗୀତ ଲେଖିଲାବେଳେ?୪

ସବୁଜିମା ଭରା ଥିଲା କି ଧରଣୀ, ପତ୍ରହୀନ ମହୀରୁହ?
ଆନନ୍ଦ ଉଲ୍ଲାସେ ଲେଖିଲ କି ଥିଲା ଅନ୍ତରେ ଉଚ୍ଛୁଳା କୋହ?୫

ବାଲିରେ ଧୂଳିରେ ଲେଖିଗଲ କି ବା ରଖିଥିଲ ପାଣ୍ଡୁଲିପି?
କିଏ ସେ ତାହାକୁ ପଢି କେବେ ପୁଣି କା ହାତେ ଦେଲା ସମର୍ପି!୬

ପ୍ରେମଗୀତ ଲେଖି ପାଇଥିଲ ତୁମେ ପୂଜା ଅବା ରାଜଦଣ୍ଡ ?
ଜାଣିଥିଲ କବି ପ୍ରେମଗୀତ ଦିନେ ଗାଇବ ସାରା ବ୍ରହ୍ମାଣ୍ଡ ? -୭

ମିଠା କବିତା

ଆଜି ବିଶ୍ବ ସାରା ସେ ଗୀତ ତରଙ୍ଗ ଶୁଭେ ଭିନ୍ନ ଭିନ୍ନ ସ୍ବରେ ।
ସାଥୀ ପାଇଁ ସାଥୀ ଲେଖି ଗାଏ ହେଲେ କିଏସେ ତୁମକୁ ସ୍ମରେ! ୮

କି ଥିଲା ତୁମର ରାଜ୍ୟର ଠିକଣା, କୁଳ ଗୋତ୍ର ପରିଚୟ?
ତୁମ ଲାଗି କେଉଁ ଦେବୀ ପୁଣ୍ୟମୟୀ କରିଲା ଗର୍ଭ-ଉଦୟ?୯

ସେ ମାତୃ-ଆନନ ସରାଗୀ ତୁମ୍ଭନ ଦେଇଥିଲା କେଉଁ ଶିକ୍ଷା?
କେବେ କେଉଁଭାବେ ସେ ନେଲା ତୁମର କବିହୃଦୟପରୀକ୍ଷା? ୧୦

ଯିଏ ହୁଅ ତୁମେ, ଯେ ତୁମ ଜନନୀ, ମାତାପୁତ୍ର ଧନ୍ୟ ଧନ୍ୟ ।
ତୁମ ପରମ୍ପରା ବିହୁନେ ଏ ଧରା ରହିଥାନ୍ତା ଶୂନ୍ୟ ଶୂନ୍ୟ ‖୧୧

ଲଳାଟେନ୍ଦୁ କବି   ୨୦୧୭୦୫୦୪-୧୨୦୯

## ଡେରି କରି ଆସୁ ରାତି -032

==========

ବରଷା ଖସିଲା     ମେଘ ପରଶିଲା
   ଜନନୀର ଲୁହ ଧାର;
ଯାଏ ଯେତେ ପାଶେ     ଧରିବାର ଆଶେ,
   ଖସି ଯାଏ ପାଦ ତାର  |1

ବରଷକ ପରେ     ବରଷାରେ ଥରେ
   ଦିଶେ ମୋ ମାଆର ମୁଖ
ବାଦଲଛତାରେ     ଆକାଶଲତାରେ
   ଝଲସିଲେ ଅଭୀରୁକ  |2

ଯାଅନା ବରଷା     ଥାଉ ମୋ ଭରସା
   ଧରିବି ମୋ ମାଆ ପାଦ;
ପାଦ ଚାହିଁ ଚାହିଁ     ଥକି ଯିବି ନାହିଁ,
   ନ ଘେନିବି ଅପବାଦ  |3

ବସନ୍ତ କାହାର        ଶରତ କାହାର,
   ବିବାସ, ଦିବସ ବେଳା;
ପ୍ରିୟ କିନ୍ତୁ ମୋର        ଆତୁଚ ଅନ୍ଧାର
   ବରଷା ବାଦଲ-ଭେଳା  |4

ଶୁଣ ମୋ ସଜନୀ        ଆସୁଛି ରଜନୀ !
   ସଞ୍ଜବନେ ଫୁଲ ରଖି
ମୋ ଲାଗି ଥରଟେ        ଶଇଳ ସଂକଟେ
   କହି ଦେଖ ରହିବ କି  ?5

ରହିଲେ ଘଡିକ        ସେ ପାଦ ଯୋଡିକ
   ଖୋଜି ଖୋଜି ନେବି ଧରି;
ଥରେ ସେ ଆନନ        ହେଲେ ଦରଶନ
   ଆସୁ ରାତି ଅବତରି  |6

ଲଲାଟେନ୍ଦୁ କବି   ୨୦୧୭୧୨୨୯୧୬୧୦ ଶବ୍ଦାର୍ଥ:

ଅତିଭୀ= lightning; ଅଶନି= thunderbolt; ସଞ୍ଜବନ= sign-post, way-mark; ବିବାସ= dawning; ଆତୁଚ୍= evening

## କେଉଁଠି ଲୁଚାଅ ମଥା        -033

ଧୂଆଁ ଧୂଆଁ ସେଇ ମେଘୁଆ ଆକାଶେ ଥାଇ,
କିଏ ଗୋ ତରୁଣୀ ସେ ଦିନୁ ରହିଛ ଚାହିଁ ?? -୧

ଭିଜା ଭିଜା ଓଠ, ଖୋଜିଲା ଖୋଜିଲା ଆଖି;
କିଏ ତୁମ ସାଥୀ, କହ ତୁମେ କାହା ସଖୀ ||  -୨

ଏକା ଏକା ସେଠି ଲାଗୁଥିବ ଅସହାୟ;
ଅଭିସାରିଣୀ ଗୋ କହ ପ୍ରିୟ-ପରିଚୟ ||  -୩

କହ ତୁମ ନାମ, ସନ୍ତକଟିଏ ଦିଅ;
ଖୋଜି ତୁମ କଥା କହି ଦେବି ନିଶ୍ଚୟ ||   -୪

ଯୁଗାନ୍ତକର ହଜିଲା କାହାଣୀ ଧରି;
ସୌମ୍ୟା ରାଗିଣୀ ପ୍ରୀତି ଗାଥା ଗୁଞ୍ଜରି;     -୫

କାହିଁ ହଜି ଯାଅ, କେଉଁଠି ଲୁଚାଅ ମଥା
ଦେବ-ଉଦ୍ଭୂତା ଆହେ ଅମ୍ବର-ସୁତା ?     -୬

## ସନ୍ତପ୍ତା ନାୟିକା                    -034

ଲେଖିବାକୁ ବାକି  ରହିଛି ଏବେ ବି  ହୃଦୟ ଗହୀର  କଥା |
ଧ୍ୱସ୍ତ ଅତୀତ  କ୍ରନ୍ଦିତ ରୁତ   ଉତ୍ପଥ ବିଜନତା | ||  -୧

ଲେଖି ଦିଏ ଖାଲି  ପଙ୍କ୍ତିଟେ  ସିନା ଆଗକୁ ପାରେ ନା ଲେଖି |
କୂଳବତୀ କୂଳେ  ବାଳୀ ବସି ଭାଳେ  ସୁନୀଳ କୁବଳ ଦେଖି || -୨

ବିଶ୍ୱପା ଦେଖି  ଇନ୍ଦ୍ରପୁଷ୍ପା ସାରା ରାତି ଅଛି ଚାହିଁ,
ସରିତ ସଲିଳ  ଚଳେ କଳ କଳ   ସାଗରେ ମିଳିବା ପାଇଁ || -୩

ପାଟଳ ମୁକୁଳ   ବିସ୍ତାରି ଦଳ  ଅଳି ପଥ ଅଛି ଚାହିଁ
ଚୁମ୍ବନ ଭାରେ ସ୍ନିଗ୍ଧ ଅଧରେ  ଲୁଣ୍ଠିତ ହେବା ପାଇଁ || -୪

ଅଦ୍ଭୁନି କୋଳେ  ଦଧିପୁଷ୍ପିକା   ମରଣ ସମ୍ଭାରେ
ଅର୍ଭଗ ପାଶେ  ବନ୍ଧନ ଆଶେ  ବଲ୍ଲଭା ଅଭିସାରେ || -୫

କି ଲାଗି ଅବଳା  ଅଶ୍ରୁ ଉଚ୍ଛୁଳା  ଅର୍ଘ୍ୟର ଥାଳ ଧରି |
ଦୟିତ ଗଳାର  ସାଜିବାକୁ ମାଳା  ନିରତ ଚାଲିଛି ମରି || -୬

## ଗଳ୍ପ ଆଗେଇ ନିଅ                    -035
==========

କହୁଥିବି ମୁହିଁ  ଶୁଣୁଥିବୁ ତୁହି  ଆଉ ଏଠି କିଆଁ କିଏ,
ଅଳ୍ପ ବେଳରେ  ଗଳ୍ପ ଛଳରେ  ରଙ୍ଗ ବୋଳିବେ ଯିଏ ? -୧

**ମିଠା କବିତା**

ତୁ କହିଲେ ପୁଣି  ଯିବି ମୁହିଁ ଶୁଣି  ଶୁଣିବେ ବତାସ ବାଆ,
ସଙ୍ଗୀତ ଧାର  ଅଧରୁ ତୋହର  ଛୁଟିବ ଯେସନ ନାଆ || -୨

ଶୁଣିବେ କାନନ  ଗିରି ପ୍ରାଙ୍ଗଣ   ମଞ୍ଜରୀ ମହୀରୁହ;
ଦ୍ୟୁଲୋକ, ଭୂଲୋକ, ଜ୍ୟୋସ୍ନା ଆଲୋକ,  ନେତ୍ର ଉଛୁଳା ଲୁହ  ||  -୩

କଥାରେ ଏମିତି  ରାତି ଯାଉ ବିତି   ଛାତି ତଳ ତାତି ଯାଉ;
ମନ-ଅଙ୍ଗନେ  ରାତ୍ରୀ ଲଗନେ  ସପନଗଙ୍ଗା ଥାଉ || -୪

ଶର୍ବରୀ କହେ  ଧୂମ୍ରାଭ ବହେ  ଗଳ୍ପ ଆଗେଇ ନିଅ;
ସରେ ନାହିଁ କଥା  ସୂତ୍ରରୁ ଯଥା  କାଢ଼ିଲେ ଅତୁଆ ଖିଅ || -୫

ଯାଅ ନାହିଁ ନିଶା,  ଏଡ଼ିକି ସହସା  ନ ଆସୁ ସୂର୍ଯ୍ୟାଲୋକ;
ଥାଉ ଏହି ବେଳା,  ନକ୍ତା-ମେଖଳା  ଟାଣି ଭିଡ଼ି କିଏ ରୋକ || -୬

ଏବେ ଏ ଗଳ୍ପ  ଆଗେଇ ଅଳ୍ପ  ଅନେକ ରହିଛି ବାକି;
ଶୁଣିବେ ମେଦୁର ପ୍ରସୂନ, ପତ୍ର , ଗିରି, ମଞ୍ଜରୀ, ଶାଖୀ  || -୭

ଶୁଣିବେ ଭୂଧର,  ସରିତ, ସାଗର,   ସର, ଅମ୍ବର, ଭୂମି;
ସ୍ନିଗ୍ଧ ସମୀର  ନେବ ତାକୁ  ଦୂର  ଅଭ୍ର, ଅଶନି ଚୁମି || -୮

ଚାଲିଛି ଗଳ୍ପ  ଅଳ୍ପ ଅଳ୍ପ  କଳ୍ପନା ସାଥେ ପୁଣ;
ବାକି ଅସୁମାରି,  ଯାଅ ନାହିଁ ଫେରି,  ଶର୍ବରୀ ଶୁଣ ଶୁଣ || -୯

ତୁମର ତ ନାହିଁ   ଭଗ୍ନୀ କି ଭାଇ,  ନୁହଁ କାହା ମନୋନୀତା,
ନୁହଁ କା ଭାମିନୀ;  କି ଜାଣ ମାନିନୀ ! ସୂକ୍ତି ଅଭିଳଷିତା || -୧୦

ଧରଣୀ ତଳ୍ପେ  ଅଳସ ଜଳ୍ପେ  ମିଳୁଛି ଗଳ୍ପ ଖିଅ;
କିଆଁ ରହି ରହି   ଚାଲିଅଛ କହି  ଗଳ୍ପ ଆଗେଇ ନିଅ  ?  -୧୧

ଲଲାଟେନ୍ଦୁ କବି -୨୦୧୭୦୭୦୫-୨୨୪୩

## ମରମପ୍ରଦୀପ ଜାଳି -036

ଛୋଟ ତୁମ ଉପବନେ
ବଡ ମୁଁ ନିରେଖ ବାଳୀ
ଯିବି ଆଜ ନିଜ ଘର
ଦିଅ ନା ଦିଅ ନା ଗାଳି । ୧

କେତେ ମୁଁ ପାଇଛି ଭଲ
ଜମା ନ ପାରିବ ଭାଳି
ତୁମ ଶୁଭ ଅବସରେ
କେତେ ମୁଁ ମାରିଛି ତାଳି । ୨

ମରି ମରି ଯାଏ ଆଶା
ପିପାସା ନ ପାରେ ଟାଳି,
ରକତେ ଲେଖୁଛି ଭାଷା
ମରମପ୍ରଦୀପ ଜାଳି । ୩

ଗହନ ନିଶୀଥେ ମୋର
ସପନପଲ୍ଲବମାଳୀ !
ସହନ କରୁଛି ଖାଲି
ଦହନରେ ଲୁହ ଢାଳି ॥ ୪

ପଲ୍ଲବ= କଅଁଳ ଥିବା ଗଛ, ଫୁଲ, ପତ୍ର, କଢ_

ଲଲାଟେନ୍ଦୁ କବି ୨୦୨୦୦୩୩୦

## ମୋ ପ୍ରେମକବିତା -037

======
ଘୋଟିବ ସଘନ ରାତି
ଆସ ଗୋ ଆସ ଗୋ ପ୍ରିୟା,
ଅଧୁରା ଥିବ କି ସାଥୀ
ଏଇ ମନ ଦିଆ ନିଆ !୧

ଏହି ରାତି ପାହିବ କି
   କେ ଜାଣେ ପାହିବ ନାହିଁ,
ଥିବ କି ଏ ପ୍ରେମପକ୍ଷୀ
   କାଲି ଦେଖା ହେବା ପାଇଁ !୨

ବସୁଧା ଘଡିକେ ଆନ,
   କାଲିକି ପଚାରେ କିଏ;
ଏବେ ମୁଁ କରିବି ଗାନ
   ମୋ ପ୍ରେମକବିତାଟିଏ । ୩

ନିଶୀଥରେ ବୁକୁଥରା
   ବିଷାଦ ପଡିବ ଝରି,
ବିଳପିବ ବସୁନ୍ଧରା
   ସେ ଗୀତ ଶ୍ରବଣ କରି । ୪

ବାହୁନିବ ପ୍ରେମପକ୍ଷୀ
   ମରଣ ଆସୁନି କିଆଁ,
ମହାର୍ଣ୍ଣବ ଯିବ ଶୁଖି
   ଦେଖି ସେ ବିରହ ନିଆଁ । ୫

ବାଣୀପୁତ୍ର  ୨୦୨୦୦୫୧୮୨୩୫୫

## ଏକାଠି କରିବା ବାସ -038

===========

ଯାଇଥିଲ କହି -  ଆସିଥିବୁ ସହି
  ଛାଇ ଲେଉଟାଣି ବେଳେ
ହାତ ଧରି ତୋର   ନେଇଯିବି ଘର
  ଚନ୍ଦର ଉଦିଆ ହେଲେ || -୧

ଛାଇ ଗଲା ଗଡି   ସଞ୍ଜ ଗଲା ମାଡି
  ଜହ୍ନ ଉଇଁ ବୁଡି ଗଲା,
ରେଖାଯାନ ଗାଡି   କେତେ ଗଲା ଗଡି,
  ତୁମେ କାହିଁ  ଗଲ ଭଲା ! -୨

କହି ଯାଇଥିଲ    ରାତ୍ରି-ଗନ୍ଧା ଫୁଲ
  ଗଭାରେ ମୋ ଦେବ  ବାନ୍ଧି;
ସାଜି ବିରହିଣୀ    ଆଜି ଏକାକିନୀ
  ଝୁରି ମୁଁ ମରୁଛି କାନ୍ଦି || -୩

ଅଗଣା ଭିତରେ    ତୁମରି ହାତରେ
  ଲଗାଇ ଯେ ଥିଲ ମଲ୍ଲି,
ଫୁଲ ଫୁଟି ଝରେ    ତୋଳି ମୁଁ ନ ପାରେ
  ତୁମେ ନାହଁ ପାଶେ ବୋଲି || -୪

କୁଙ୍କୁମ ଅଳତା    ଅଛି ମୋ ସାଇତା,
  ଦେଇଥିଲ ହାତେ ମୋର,
ଲଗେଇବା ପାଇଁ    ଦେଲେ ତାକୁ ଚାହିଁ
  ଲୁହ ଝରେ ଝର ଝର || -୫

ଫୁଲି ଯାଏ ଆଖି   ଗଳା ଯାଏ ଶୁଖି,
  ଭିଜି ଯାଏ ଗଣ୍ଡସ୍ଥଳ
ତୁମ କଥା ଭାଳି    ରାତ୍ରିଦୀପ ଜାଳି
  ନୟନୁ ଢାଳିଲେ ଜଳ || -୬

ତୁମ ସଙ୍ଗେ ଦେଖା   ନାହିଁ ଯେଣୁ ଲେଖା
  ବିଧୁରିତା ମୁଁ ବନିତା;
ହାରିବି  ଜୀବନ   କରି କରି ଗାନ
  ଦରଦୀ ତୁମ କବିତା || -୭

ଆଖିରେ ଆଖିଏ   ଲୁହ ମୋର ଥାଏ,
  ଛାତିରେ ଛାତିଏ କୋହ;
ତାନପୁରା ତାନେ    ଆରୋହ ମୁଁ ଟାଣେ,
  ଭୁଲି ଯାଏ ଅବରୋହ || -୮

**ମିଠା କବିତା**

ରଖିଥିବ ବଳ    ଆଉ ତ କେବଳ
  ଅଳପ  ଦିନ କି ମାସ,
ଝୁରି ଝୁରି ଦିନ   ଯିବି ଶମଶାନ,
  ଏକାଠି କରିବା ବାସ || -୯

ଲଳାଟେନ୍ଦୁ କବି ୨୦୧୭୦୮୨୪-୨୩୧୬

## କାହା ପାଇଁ ହେଲି ବୈଭାବର    -039

କାହାକୁ କହିବି କହି କି ପାଇବି କି ଲାଗି ବସିଛି ଚାହିଁ;
ଚାହେଁ ମିଛଟାରେ ଝରକା ସେ ପାରେ, ଆସିବାର କେହି ନାହିଁ ||୧||

ତୁ ତ ଦେଲୁ କହି ସୁନା ପିଲା ହୋଇ ସହଜ ସରଳ କଥା;
ମୁଁ ଏକା ଜାଣିଛି କି ଲାଗି କି ଅଛି କେଉଁଠାରେ ଅବ୍ୟବସ୍ଥା ||୨||

ଶୋଇ ଯା ରେ ଧନ, ମୋ ଗଣ୍ଡିରତନ ତୋ ମନ କରନା ଭାରି;
ଅଳପ ବୟସ, ମୁଖେ ଥାଉ ହସ, ମୋ ଲାଗି ହୁଅନା ଘାରି ||୩||

କି କରିବୁ ଧନ ? ମୋ ଭାଗ୍ୟ ଲିଖନ ଯାହା ଅଛି ତାହା ଥାଉ;
ସରିଲା ଜୀବନ, ବାକି କେତେ ଦିନ ? ଏଇ ଭାବେ କଟି ଯାଉ ||୪||

ତୁ କି ଜାଣୁ ମୋର ଏ ଘର ଦୁଆର ଅହରହ ରଖେ ଖୋଲି;
ଯାଏ ନାହିଁ ଦୂରେ ଅକାଳେ ଏ ପୁରେ କାଳେ କେ ଆସିବ ବୋଲି ||୫||

କେହି ଆସେ ନାହିଁ କେହି ଯାଏ ନାହିଁ ଚାହିଁ ଚାହିଁ ଦିନ ଯାଏ;
ମିଛେ ଦେଖେ ବସି କିଏସେ ପ୍ରେୟସୀ ଫିକା ହସି ଡାକୁ ଥାଏ ||୬||

ଦେଖେ ପାଶେ ବୋଲି ଆଖି ଦେଲେ ଖୋଲି ଦିଶେ ଘନ ନିଷଦ୍‌ବର;
ଜାଣି ପାରେ ନାହିଁ ମିଛେ କାହା ପାଇଁ ହେଲି ମୁହିଁ ବୈଭାବର ||୭||

ଲଳାଟେନ୍ଦୁ କବି ୨୦୧୮୦୩୦୯୦୨୦୮

ନିଷଦ୍‌ବର= night; ବୈଭାବର= nocturnal, ରାତ୍ରିଚର;

## ମିଠା କବିତା

ପ୍ରେମପୁଷ୍ପ -040

-

କେତେ ଫୁଲ ଫୁଟି ଝଡିଲାଣି ଏଠି
କଳନା କରିବ କିଏ ?
ନାନା ରଙ୍ଗେ ଭରା ଫୁଲର ପସରା
ନିତି ଏଠି ଫୁଟୁଥାଏ | -୧

ତୋଳିନେଇ କିଏ ପୂଜାରେ ଲଗାଏ
କିଏ ବା ମଥାରେ ମାରେ,
କିଏ ତା ସୁବାସେ ମୁଗ୍ଧ ହେଇ ଆସେ,
ବସେ ମୁହଁ-ଅନ୍ଧକାରେ | -୨

ବଇଁଶୀବାଦକ ଗୋପାଳ ବାଳକ
ଖରାବେଳେ ଏଠି ବସି
ସୁମଧୁର ତାନେ ବିହ୍ୱଳିତ ମନେ
ବଜାଏ କରୁଣ ବଂଶୀ | -୩

ସେଇ ଏକା ଫୁଲ ଆସିଲେ ସକାଳ
ସବୁଠାରେ ଥାଏ ଫୁଟି
ସବୁଠୁ ସୁନ୍ଦର ଏଇ ଗଛ ଫୁଲ
ନଦୀକୂଳେ କିନ୍ତୁ ଏଠି | -୪

ତାରକାଖଚିତ କୁସୁମସଜ୍ଜିତ
ଆକାଶପୃଥିବୀ ଶୋଭା
ଶରତଶର୍ବରୀ ଚନ୍ଦ୍ରିକା ବିଚ୍ଛୁରି
ଦିଶେ ଏଠି ମନଲୋଭା | -୫

କାହିଁକି ଏମିତି ଏଠାରେ ଏ ରୀତି
କେହି ନ ପାରନ୍ତି ଜାଣି
ବିଜନ ବେଳାରେ ବିଧବା ବାଳାର
ଏଇଠି ଶୂନ୍ୟ-ଚାହାଣି | -୬

ହେଲା କୁତୁହଳ,  ହେଲି ଅସମ୍ଭାଳ
 ରହସ୍ୟ ବୁଝିବି ବୋଲି
ଗଛଲତା ସଙ୍ଗେ  ଅତ୍ୟନ୍ତ ସରାଗେ
 ମନେମନେ କଥା ହେଲି | -୭

ମୋ ହୃଦୟ କଥା  ବୁଝି ଗୁଳ୍ମଲତା
 ଇସାରା କହିଲେ ଯାହା
ଯେମିତି ଶୁଣିଲି  ସ୍ଥାଣୁ ମୁଁ ଭାବିଲି –
 ଏ ମାଟି କି ସର୍ବଂସହା ? -୮

ସେ କେଉଁ ପ୍ରେମିକା  ନବୀନା ବାଳିକା,
 ପ୍ରେମପାଗଳୀନି କାଳେ
ତା ପ୍ରେମିକ ସାଥେ  ଜୀବନ ଯାଆନ୍ତେ
 ଶୋଇଛି ଏ ମାଟି ତଳେ | -୯

ଦିବ୍ୟ ଦେବଦୂତ  ଆଣିଥିଲେ ରଥ
 ସରଗକୁ ନେବା ପାଇଁ
ସେ ପ୍ରେମୀ ଦି'ଜଣ  କଲେ ପ୍ରତ୍ୟାଖ୍ୟାନ
 ବିନୟ ବଚନ କହି | -୧୦

ସେଦିନୁ ଏଠାରେ  ସୁପୁଷ୍ପ ସମ୍ଭାରେ
 ଭରି ଉଠୁଛି ବସୁଧା
ଆସନ୍ତି ଅନେକ,  ବହୁ ଗ୍ରାମ ଲୋକ,
 ପିଅନ୍ତି ସତେ କି ସୁଧା | -୧୧

ତୁମେ ବି ସେମିତି  ଏଇ ଫୁଲ କତି
 ନିତି ନିତି ଆସ ବୁଲି
ସେ ପ୍ରେମୀଯୁଗଳ  ଅତି ସୁକୋମଳ,
 ଧୀରେ ଆସ ପାଦ ଚାଳି | -୧୨

ଲଲାଟେନ୍ଦୁ କବି ଜୁଲାଇ ୨୦୧୪

## ଏ କାହା କବିତା -041

=========

ଜୀବନପିଆଲା
ଥିଲା ମତୁଆଲା,
ଶୁଖି ଶୁଖି ଗଲା ସରି!
ଆଉ ଯା ଟୋପାକ
ସେ କଲେ ବିପାକ
ଅକାଳେ ପଡିବି ଝରି ।୧

ଏଇ ଗଛଲତା
ସେନେହମମତା,
ଚଲା ପଥ ଚରା ଭୂଇଁ
ତେଜି ଗଲେ ଦୂରେ
ହେଜିବ ଆତୁରେ,
ଖୋଜି ନ ପାରିବ ଛୁଇଁ ।୨

ମୋର ଯିବା ପରେ
ଗୋବର ଲେପରେ
ପୋଛି ଦେବ ଘରବାଡି,
ମୋ ଘର ବନିତା
ଜାଳିବ ବଳିତା
ତଳିଠୁ ଅଳପ ଛାଡି ।୩

ପ୍ରଦୋଷ ଛୁଆଁରେ
ମୋ ବାସ ଦୁଆରେ
ଜୁଆରିଆ ହେଲେ ମନ,
ଟେକି ଦେଇ ବତୀ
ଲେଖିବ ମୋ କତି
କତିପୟ ସଂବଦନ ।୪

_ସଂବଦନ= ସନ୍ଦେଶ_

ପ୍ରତ୍ୟୁଷ କାଳରେ
ପଣସ ଡାଳରେ
ଖୋସି ଦେଇଥିବ ଚିଠି;
ବସି ସଞ୍ଜବନେ
ପଢିବି ଅଜନେ
ସଞ୍ଜ ହେଲେ କିଟିକିଟି ।୫
_ସଞ୍ଜବନ= ପଥ/ରାସ୍ତା ଚିହ୍ନ;
_ଅଜନ= ନିର୍ଜନ_

ନିମ ଖଡିକାରେ
ସୁମ କଳିକାରେ
ପତ୍ରେ ଦେବି ପ୍ରତ୍ୟୁତ୍ତର,
ପତ୍ରେ ପତ୍ର ଟିପି
ହେବ ପାଣ୍ଡୁଲିପି
ପୂରି ଗଲେ ସମ୍ବତ୍ସର ।୬
ସୁମ= ଫୁଲ; ପତ୍ର= ପାଖୁଡା;
_ସମ୍ବତ୍ସର= ବର୍ଷ_

ସେ କବିତା ଗ୍ରନ୍ଥ
ଏ ବିଶ୍ୱଜଗତ
ପଢି ହେବ ଆତ୍ମହରା,
କିଏ ରଚୟିତା,
ଏ କାହା କବିତା —
କହୁଥିବ ବସୁନ୍ଧରା ।୭॥

*ବାଣୀପୁତ୍ର ଲଲାଟେନ୍ଦୁ କବି*

## ମିଠା କବିତା

## କରିଥାନ୍ତି ପ୍ରେମନିବେଦନ -042

ସୁଦୂରବାସିନୀ
ମୃଦୁଳହାସିନୀ
ପ୍ରେମପିପାସିନୀ ଶୁଣ,
କି ଲାଗି ଅନ୍ତରେ
ଜାଗିଲା ସତ୍ୱରେ
ପ୍ରେମରଙ୍ଗ ନବାରୁଣ ?୧ ||

ନହୁଲୀ ବୟସେ
ମହୁଲୀ ମନସେ
ଚହଲିଲା ପ୍ରୀତିସର,
କିଏ ପରଦେଶୀ
ହୃଦୟେ ପ୍ରବେଶି
ସଂବେଶିଲା ବାସଘର ।୨ ||

କଜ୍ଜଳ-ଲେପିତ
କିଞ୍ଜଳ-ପ୍ରତୀତ
ଦୃଗ୍ଜଳ-ପ୍ରସିକ୍ତ-ଦୃଷା
କୁଞ୍ଚିତ କୁନ୍ତଳ
ଲୁଣ୍ଠିତ ଅଞ୍ଚଳ
ତୃଷିତ-ବାତ୍ସଳ-ଭୂଷା; ୩||

କାନନ-ମୁଦିରା
ଆନନ-ରୁଚିରା
ଗାୟନ-ସୁଗିରା ଧୀରା,
ଶୂନ୍ୟ-ଆଲୋକିନୀ
ପୁଣ୍ୟ-ପଲ୍ଲବିନୀ
ଦୈନ୍ୟ-ବିଲୋପିନୀ ହୀରା !୪ ||

କା ମନୋହାରିଣୀ
ଏ ବନଚାରିଣୀ
ପ୍ରେମପୂଜାରିଣୀ ତୁମେ ?
ତୁମ ଆଶେ ସାରା
ଆଶାର ଇସାରା
ଈପ୍ସିତ ପସରା ଝୁମେ ।୫ ॥

ତୁମେ କା ପୂଜାର
ଅର୍ଘ୍ୟ ଉପଚାର,
ଉପହାର ଉପାସନେ,
କା ହୃଦୟରାଣୀ,
ଇନ୍ଦ୍ରବଜ୍ରା ବାଣୀ
ମଣିରତ୍ନ ସିଂହାସନେ ?୬ ॥

କେଉଁ ଭୂତାକାଶ
କେଉଁ ହୃନିବାସ
କାହା ସନ୍ନିବାସ ତେଜି
ପ୍ରସୂନପଲ୍ଲବେ
ଖୋଜୁଛ ବଲ୍ଲଭେ
ପ୍ରଭବ-ଦୁର୍ଲଭେ ହେଜି ?୭ ॥

ପ୍ରହତ ମୋହର
ଅର୍ହତ ପ୍ରହର,
ପରାହତ ଯଉବନ:
ଥିଲେ ମୁଁ ନିର୍ଜର
କରନ୍ତି ନିଜର
ପ୍ରୀତିଝର ନିବେଦନ ।୮ ॥

*ଲଲାଟେନ୍ଦୁ କବି*
*୨୦୧୮୦୬୧୬୦୪୦୦*
*_ଶବ୍ଦାର୍ଥ:—*_
ସଂବେଶ= make seated;
କିଞ୍ଜଳ= ପଦ୍ମ, lotus,

## ମିଠା କବିତା

ବାନ୍ଧୁଳ= ଓଠ, lip;
ଦୃଶା= ଅଆଖି, eye;
ମୁଦିର= ପ୍ରେମିକ, lover;
ଆଲୋକୀ= ଯେ ଦେଖେ, seer,
ସ୍ତ୍ରୀ: ଆଲୋକିନୀ,
ଦୈନ୍ୟ= ଦୁର୍ଦ୍ଦଶା, misery;
ଇନ୍ଦ୍ରବଜ୍ରା= ଛନ୍ଦବିଶେଷ, a metrr;
ଦ୍ୟୁନିବାସ= ସ୍ୱର୍ଗ, heven;
ସନ୍ନିବାସ= ସାମାନ୍ଯ ନିବାସ, common dwelling;
ପ୍ରଭବ= ବଳ, ଶକ୍ତି,
power, might;
ପଲ୍ଲବ= ପତ୍ର, leaf;
ବଲ୍ଲଭ= ପ୍ରେମିକ, lover;
ପ୍ରହତ= ମୃତ, dead;
ଅର୍ହତ ପ୍ରହର= worthy times/days;
ପରାହତ= ପ୍ରତ୍ୟାଖ୍ଯାତ, rejected, tilted;
ନିର୍ଜର= ଜରାରହିତ;

**ରଞ୍ଜିତ ହାହାକାର** -043

--------------------

ସେଦିନ ସନ୍ଧ୍ୟା
ରଜନୀଗନ୍ଧା
ଅନ୍ଧାରେ ପ୍ରେମ ବୋଳି,
ପ୍ରତ୍ନ କଳାରେ
ରତ୍ନ ଗଳାରେ
ଯତ୍ନରେ ଦେଲ ତୋଳି ।୧ ||

ରକ୍ତ-ଅଧର-
କ୍ଷିପ୍ତ ତୁମର
ଦୀପ୍ତ ଚୁମ୍ବ-ସାରେ,
ରଖିଛି ତିକ୍ତ
ମର୍ମେ ସିକ୍ତ
ରିକ୍ତ ଚନ୍ଦ୍ରହାରେ ।୨ ||

**ମିଠା କବିତା**

ସେହି ମୋ କାବ୍ୟ,
ସେହି ମୋ ନାବ୍ୟ
   ଭାବ୍ୟ ଦୈନ୍ୟ-ଭାରେ;
ସେ ମୋର ଚିତ୍ତ-
ଗହନ-ବିତ୍ତ
   ମରଣ ସମ୍ପ୍ରହାରେ ।୩

ବଲ୍ଲୂର ଗତେ
ବନ୍ଧୁର ପଥେ
   ସେ ମୋର ସମ୍ମୋହନ,
ଅଗ୍ନି-ପ୍ରହାରୀ
ଅଦ୍ରି ସେପାରି
   ଆର୍ଷ ସଞ୍ଜୀବନ ।୪

ଆଜିର ସନ୍ଧ୍ୟା
ଚପଳଛନ୍ଦା
   ଅଳକନନ୍ଦା ଧାରେ,
ସେ ଦେହଗନ୍ଧ
ବଢ଼ାଏ ସ୍ୱନ୍ଦ
   ନିଝୁମ୍ ଅନ୍ଧକାରେ !୫॥
ଗହନ ସତ୍ତ୍ୱେ
ଅଜନ ଧର୍ତ୍ତ୍ରେ
   ମୌନ ମନ୍ତ୍ରୋଚ୍ଚାରେ,
ଶୁଭେ କ୍ରନ୍ଦିତ
ସେହି ଉଦ୍ଗୀତ
   ରଞ୍ଜିତ ହାହାକାରେ ।୬॥

{କାବ୍ୟପୁରୁଷ ବାଣୀପୁତ୍ର}
ଲଲାଟେନ୍ଦୁ କବି
୨୦୧୮୦୭୧୦୦୦୩୦

ଚୁମ୍ବ= ଚୁମ୍ବନ; ତିକ୍ତ= ପିତା, ସୁବାସ (ଏଠି ସୁବାସ ଅର୍ଥରେ ଲେଖିଛି) ଅଧର= ଓଠ; ରିକ୍ତ= ଶୂନ୍ଯ, ଖାଲି; ଚନ୍ଦ୍ରହାର= ଗଳାହାର; ନାବ୍ୟ= ନୂତନତ୍ୱ; ଭାବ୍ୟ=

ଭବିଷ୍ୟତ୍ ; ସତ୍ତ୍ର= ବଣ; ଅଜନ= ବିଜନ, ଜନଶୂନ୍ଯ, ନିର୍ଜନ; ସମ୍ପ୍ରହାର= ଭୀଷଣ/ ବିଶେଷ ପ୍ରହାର; ବଲ୍ଲୁର= ମରୁଭୂମି; ବନ୍ଧୁର= ଅଙ୍କାବଙ୍କା; ଅଦ୍ରି= ପର୍ବତ; ଆର୍ଷ= ଋଷିଙ୍କ ଯୋଗ୍ୟ; ସଞ୍ଚବନ= ପଥଚିହ୍ନ, way/ road mark.; ଉଦ୍ଗୀତ= (ପବିତ୍ର) ସଂଗୀତ; ଋଦ୍ଧିତ= କ୍ରମ ବର୍ଦ୍ଧମାନ

## ଧ୍ୱସ୍ତ ପତର ଭାଷା -044

-

(ମୋ ଜୀବନର ଏଇଟା ପ୍ରଥମ ଗଦ୍ୟ-କବିତା | ପାରୁ ପର୍ଯ୍ୟନ୍ତ ଛନ୍ଦୋବଦ୍ଧ କରିଥିବାରୁ ଗଦ୍ୟ ସହ କବିତା ଶବ୍ଦ ଲଗେଇଲି | ଧୃଷ୍ଟତା ମାର୍ଜନା କରିବେ |)

-

ଖଣ୍ଡିତ ଦୀପ
ଦଗ୍ଧ ସଳିତା
ଅନଳର ଶିଖା
ଜଳୁଛି ସେଥିରେ
ତିଳେ ହେଲେ ସେ ତ
କାହିଁ ଏ ଯାବତ
ପ୍ରଶମିତ ହେଇ ନାହିଁ |

ପ୍ରତିଚୀ ଗଗନେ
ଦିଗ୍ବଳୟର ତଳେ --
ଭାସ୍ୱତ ସାତ-ଅଶ୍ୱ-ଚାଳିତ
ନିଖୋଜ ହେଇ ବି
ଅସ୍ତାଚଳର ଅନ୍ତରଙ୍ଗେ
ଅଳ୍ପ ଆଲୁଅ
ଏବେ ବି ଚାଳିଛି ଦେଇ |

ଲତା-ଗୁଳ୍ମରୁ ଶୁଷ୍କ ସୁମନ
କଳ୍ପନା ଭରା-
ଜୀବନ ଅସ୍ତ କାଳେ
ନେବ ଆଶ୍ରୟ
ହେଲାଣି ସମୟ
ସଞ୍ଚୟ କରି ବଳ
ଆଖି ମେଲି ଜଳ ଜଳ --

ଧରି ସେ ସାହସ
ଦେଉଛି ସୁବାସ
ଝଡ ବତାସରେ
ତଳେ ଝଡି ପଡି
ଏବେ ବି ତ ମରି ନାହିଁ |

ସାଗର କନ୍ୟା --
ଥିଲା ସେ ଧନ୍ୟା
ଛୁଟାଇ ବନ୍ୟା
କ୍ରୀଡା ନିମଗ୍ନା
ଦୁଇ ଧାରେ ଧରି
ରୂପ ଅନନ୍ୟା
ବର୍ଣ୍ୟ କାମନା ଜାଗ୍ରତ କରି
ବିଳାସ-କୁଶଳୀ
ଛଟକ-ନିପୁଣା
ଧରଣୀ-ମଗ୍ନା
ଫଲ୍ଗୁ ଯାଇଛି ବହି;
ଦିଶୁ ନାହିଁ ସିଏ
ଲୁଚି ଲୁଚି ଦିଏ
ଜଳର କଣିକା
ମାଟିର ଗର୍ଭେ ଥାଇ |

ମୋତେ --
ହେଲାଣି ବୟସ,
ଆଉ କେତେ ମାସ,
କି ଅବା ବରଷ ନିରତ ନିରସ
ମୋ ପାଶେ ଯାଇଛି ରହି;
ଉତ୍କଳ-କଳା ଉଜ୍ଜ୍ୱଳ କରି
ତୁମରି ଗଳାରେ ଅରପିବି ମାଳା,
ଦେଇ ଯିବି ଭାଷା --
ନାହିଁ ତିଳେ ଆଶା
ମୋର ରହି ଯାଇଥିବା ଛିଣ୍ଡା ଖାତାର

ଅଛ କେତେଟା ପୁରୁଣା କବିତା
ତା'ର ଜରା-ଜର୍ଜର
ଧୂସର ବର୍ଣ୍ଣ, ମରଣାପନ୍ନ --
ସେଇ ଧ୍ୱସ୍ତ ପତରୁ ଦେଇ !
27-10-2014

ଚିଠି: -045
==
ଚିଠି,
ସେ ତ –
ସ୍ମୃତିରେ ଅଲିଭା ଗାର !

ସେ ତ –
ସ୍ୱପ୍ନ-ଗନ୍ତାଘର;
କେତେ –
ଛାତିର ରକ୍ତ ଧାର;

ବର୍ଷା ରାତିରେ ଝର୍ଝର ନୀରେ
ପାରାବାର ତୀରେ
ହତ-ଅଭିସାରେ
ସିଏ –
ବାଲିରେ ହସ୍ତାକ୍ଷର;

ଜୀବନ ବେଣୁରେ
ଶ୍ମଶାନ ରେଣୁରେ
ପ୍ରୀତି-ପ୍ରତୀତିର ଦମିତ ଶମିତ
ବିଦ୍ରୋହ ବାର ବାର,
ଜନ୍ମେ ଜନ୍ମେ ନିଗ୍ରହେ ଧରା
ତୃଷ୍ଣା-ତୁଣୀରେ
ତୀକ୍ଷ୍ଣ କାମନା-ତୀର |

ଗୋଟି ଗୋଟି ଚିଠି
ପାଟି ଗଲେ ଫିଟି
କୋଟିଏ ଆସ୍ୱେ

ଉଠିବ ଉଳୁଟି
ଲାସ୍ୟ-ନୂପୁର-ସ୍ୱର;
ଶତ ବନ୍ଧନ ଖଣ୍ଡନ କରି
ଗୁଞ୍ଜରି ଯିବ ଜୀବନ କାସାରେ
ନିନାଦ ବିଷାଦ ସ୍ୱର,

ତୋଳି ଶତ ଶତ ମୂର୍ଚ୍ଛିତ ପ୍ରାଣେ
ଆଶାର ଆସର -    ଉଷ୍ମ ସରିତ ଝର:

ଗୋଟେ – ଦରଦୀ ଅନ୍ତଃସ୍ୱର;
ଏଣୁ – ପ୍ରୀତିରେ ପତ୍ରାଚାର,
କର – ସଭିଏଁ ପତ୍ରାଚାର ,
କର – ପ୍ରୀତିରେ ପତ୍ରାଚାର |
ଆସ – କରିବା ପତ୍ରାଚାର !!

(ଲଲାଟେନ୍ଦୁ କବି) ଶ୍ରୀ ହରିଶରଣମ୍
୨୦୧୬୧୨୩୦-୧୮୪୦

## ବିଗତ ଯୌବନେ କେମିତି ଲେଖିବି        -046

-
ପ୍ରେମକବିତା ବି
ଲେଖିଥିଲି ପିଲାବେଳେ,
ଏବେ --
କେବେ କେବେ ମନେ ପଡ଼େ;
ମୁହଁ ଅନ୍ଧାରେ,
କେବେ ବା ଶୀତ ସକାଳେ
ମୋର—
ପୁରୁଣା ଖାତାଟି
ଏକା ଏକା କାଢ଼ି ପଢ଼େ ||
କର୍ମକଷଣ
ଚାପରେ ଦିବସରାତି
ଚାରି ଦଶନ୍ଧି
କଲି ଅଜ୍ଞାତବାସ;

ଅବସରେ ଏବେ
ବିଗତ ମୋ ଯଉବନେ,
ପୁଣି—
ଲେଖିବି କବିତା,
କରିଛି ଦୁଃସାହସ ||
-
ବନ୍ଦେବି ମା !
ତୁମରି ଚରଣ ଧୂଳି
କାଣିଚାଏ ଏଇ
ବିଦାୟ ବେଳେ ଯେ ଦେଲ;
କୋଟି କୋଟି ଘେନ
ପ୍ରଣାମ ଏ ଅଧମର;
-
ହେଲେ –
ଯଉବନ ଗତେ,
ହତବସନ୍ତେ
ପାରିବି କି ଲେଖି
ଗୀତ ମନଲାଖି ?
ଏବେ ଯା' ଲେଖୁଛି
ଦିନେ କାଳେ କିଛି
ମୁଁ ଜାଣେ ସେଥିରେ
କଣ୍ଟା ବହୁତ,
କାଁ ଭାଁ ଥିଲେ
ଥିବ ଗୋଟେ ଅଧେ ଫୁଲ ||
-
ଉତ୍କଳବାସୀ
ମୋ ପ୍ରିୟ ପଡ଼ୋଶୀ !
ତୁମ ମନଖୁସି
କରିବାର ଅପଚେଷ୍ଟା
କରୁଅଛି ଏବେ;
ନ ଧରିବ କେବେ
ହେଲେ ରୁଚିହୀନ
ମୋ କବିତାମାନ,
ମୁଁ ତ ଅକିଞ୍ଚନ

ଜନ ଗୁଣହୀନ,
କହିରଖେ ଶୁଣ,
ମୁଁ ନୁହଁ ସାହିତ୍ୟସ୍ରଷ୍ଟା ||
-
ଲଲାଟେନ୍ଦୁ କବି
୨୮-୧-୨-୧୪
-
ଶ୍ରୀ  ହରିଶରଣମ୍

## ବନ୍ଧୁ ହାତରେ ମୋ ବରଗଛ ଖବର ପଠେଇଛି
-047

ଶତାବ୍ଦୀରୁ ଅଧିକଲୀଟିଏ
ପଛରେ ଛାଡ଼ି ଯାଇଛି ସିଏ,
ନିଅ ରେ ଭାଇ ନିଅ,
ଆଣିଛ ପରା କେମେରା, ତହିଁ ଚିତ୍ର ଭରି ଦିଅ |
ଦେଖେଇ ଦେବ ଫେରିଲେ ଯାଇ --
"ତୋ' ବରଗଛ ହେଇ ରେ ହେଇ |"
ଦେଖିଲେ ତାର ଆଖିରୁ ଟୋପେ ପଡ଼ିବ ଝରି ଲୁହ;
କାହିଁକି ଜାଣ ? କହୁଛି ଶୁଣ –
ସେଇ ମୋ ଗେଲା ପୁଅ ||୧||

ସାଥୀ ସଙ୍ଗାତ ଜଣେ ଜଣେ ତ
ଗଲେଣି ତା'ର ମଶାଣି ପଥ --
କହିବ ସବୁ କଥା,
ହାତରେ ହାତ ରଖି କହିବ, ଦେବନି ବେଶି ବ୍ୟଥା |

କହିବ ତାକୁ, କାଢ଼ି ସେ ବେଳ
ବୁଲି ଦେଖିବ ତା' ନଦୀ କୂଳ;
ସେ ଦିନ ପରି ଆଜି ବି ତା'ର ଚାଲିଛି ଦେଇ ଜଳ;
କହିବ କିଏ ଜଳ କି ସିଏ
ଅଶ୍ରୁ ଅବିରଳ ||୨||

## ମିଠା କବିତା

ବିଦ୍ୟାଳୟ-ବଣ ଗହଳେ,
ଗ୍ରୀଷମ କାଳେ ମୋ ଛାଇ ତଳେ
ସିଏ -- କାଟିଛି ଖରା ବେଳ;
ମୋ' ଡାଳ ପରେ ଚଢ଼ିଛି କେତେ
କୁଣ୍ଢାଇ ତାକୁ ଧରିଛି ହାତେ,
ଆଉ -- ଥରେ କି କେବେ ଆସିବ ନାହିଁ,
ମାଡ଼ିବ ନାହିଁ ଏ ଗଛ ଛାଇ,
ଦେଖିବ ନାହିଁ ଜୀବନେ ଆଉ କରଞ୍ଜ ମାଳମାଳ ?
ବରଗଛ ମୁଁ କରଞ୍ଜିଆର
କା' ଲାଗି ତେବେ କଲି ବାହାର
ମୋର -- ଏତିକି ଓହଳ ?
ତାକୁ -- କହିବ ଯାଇ, "ବୁଲି ଆ ଭାଇ,
ଥରେ -- ଝୁଲି ଯା ସହଳ" ||୩ ||

## ଦେଖିବ ରୁହ -048

ବିଜନେ ବଜାରେ ବାଜିଲେ
ବାଜେ ଗୀତ ବାଜେଣି
ଜାଣିବ ଜଗତ ଜିଣି ମୁଁ
ବାହୁଡ଼ିଲି ସଜନୀ || ୧

ଲେଖୁନି ଲେଖନୀ ଗାର ଏ
ମୋର ରକତ-ଛିଟା;
କିଏ କହେ ଦୁଃଖୀ-ଦରଦ,
କିଏ କହେ କବିତା || ୨

ଯତନେ ରଖୁଛି କରତି
ଛାତି, ତାତିଲା ଧାସ,
ତହିଁରୁ ଗାର ମୋ ବାହାରେ
ପୂର୍ଣ୍ଣମାସୀ ଉଆଁସ || -୩

## ମିଠା କବିତା

ଲୁହ ଲେହନର ଆହ୍ଲାଦେ
ଦହି ମୋହିଲେ ମନ
କି କାର୍ଯ୍ୟ କେ କଲା ଆଦର,
କଲା କେ ହୀନିମାନ !-୪

କରଣିରେ ଘୋରା ରକତ
ସାଥେ ଗରମ କୋହ
କାରୁକୃତି କେବେ ଦେଖ୍ ନ?
ସଖୀ ଦେଖିବ ରୁହ || -୫

ମୋ ବିଦାୟ ବେଳେ ଲୋତକ-
ଜଳ ଢାଳିବେ ଲବେ -
ଦାୟାଦ ସାହିତ୍ୟ-ଅପତ୍ୟ
ଜଣେ କେଣେ ତ ଥିବେ ||୬

ସେ ଲୁହ ପରଶେ ହରଷେ
ଜଳି ଯିବ ମୋ ଜୁଇ;
କହି ଦିଅ ସହି ତିଳେ ହେଁ
ହେଜି ଝୁରିବ ନାହିଁ || -୭

ଲଳାଟେନ୍ଦୁ କବି ୨୦୨୧-୦୯-୧୬

## ଦେଖିବି ମୁଁ ବ୍ରହ୍ମାଣ୍ଡସୁନ୍ଦରୀ -049

==============

ଦେଖିନି ବଦନ ଗୋରୀ ଦେଖିବି ପ୍ରଥମକରି
ଶୁଣିଛି ତ ଭୁରିଭୁରି ତୁ'ଟା ବ୍ରହ୍ମାଣ୍ଡସୁନ୍ଦରୀ || -୧

ରସନା ରଖିଲେ ମାରି କାନ୍ଦିବୁ ତୁ ବୁକୁଚିରି,
କହିବି ସାହସ କରି ଯାଉଛି ମୁଁ ଡରିଡରି || -୨

ନୟନୁ ପର୍ଜନ୍ୟ ପରି ଝର୍ଝର ଝରିବ ବାରି;
ତୋଲାଗି ଅବଳା ନାରୀ ହେବି କି ମୁଁ ମିଥ୍ୟାଚାରୀ ? -୩

ମିଠା କବିତା

ସହିବୁ ଶୁଣି ବିଚାରି ଯାଇଛି ସେ ପରକରି;
ତୁ ଥିଲୁ ତା ସହଚରୀ ସେ ତୋ ଢାଲ, ତରବରୀ || -୪

କରିଥିଲୁ ସାତଫେରି ଶଙ୍ଖାଚୁଡ଼ି ସଜ ଧରି;
ଫୁଟୁଥିଲା ଫୁଲଝରି ବାଜୁଥିଲା ଭେରୀତୁରୀ || -୫

ଚାହିଁଲେ ପଛକୁ ଫେରି ଲାଗୁଥିବ କାଲିପରି,
ଆଣିଲା ଚଢ଼ି ସବାରୀ କୋକେଇରେ ଯିବ ଫେରି || -୬

ଅଦିନ ବରଷା ବାରି ସାଥେ ଏ ଯେ ଘଡ଼ଘଡ଼ି,
ଶୁଣିବୁ କି ଦମ୍ଭଧରି ଭୂତଳେ ପଡ଼ିବୁ ଝଡ଼ି ?   -୭

ଦେଖିବି ମଉନ ମାରି; ସମ୍ଭାଳିଲେ ହାତ ଧରି
କହିବେ ତୁ ବାରନାରୀ, ମୋତେ ତୋର ବ୍ୟଭିଚାରୀ || -୮

ଥିବି ତୋ ପାଶେ ସୁନ୍ଦରୀ ଛାତିକୁ ପଥର କରି,
ଘେରିଘେରି ପୁର ନାରୀ ଆଖି ହେବେ ଠରାଠରି || -୯

ଆକାଶେ ଆସୁଛି ମାଡ଼ି ଘନ ମେଘ ଘଡ଼ଘଡ଼ି
ଖୋଲିବି କାହାଣୀପେଡ଼ି ବେଳ ନଯାଉଣୁ ବୁଡ଼ି || -୧୦

ଦେଖିବି ପ୍ରଥମ କରି ବନ୍ଧୁପତ୍ନୀ ମନଭରି,
କାନ୍ଦୁଥିବୁ ଝୁରିଝୁରି, ମୁଁ ଥିବି ପଥର ପରି || -୧୧

ଲଲାଟେନ୍ଦୁ କବି        Lalatendu Kabi
===========

## ଶୂନ୍ୟପଥ                                -050

-
କହେ ବଇରାଗୀ ଶୁଣ ଅନୁରାଗୀ
ସୁହାଗୀ ସରାଗୀ କୋହ:
ଏ ପର ସହରେ ତୋ ପ୍ରେମ ଲହରେ
ପ୍ରହରେ ହେଲା ଦୁଃସହ ||୧||

-
ଏ ଗିରି ଗୁହରେ ବଲ୍ଲୀ ଭୂରୁହରେ
ଲୁହରେ ଦେଇଛି କହି;
ବିସର୍ଜି ବସତି ପ୍ରବାସ ପୀରତି
ପାରୁ ନାହିଁ ଆଉ ବହି ||୨||
-
ବେଳ ଦେଲି ସାରି ଖେଳ ଜିତି ହାରି
କି ହେଲା କେ କଲା ବୋଲି;
ତେଜି ସେ ସକଳ ଚଳିବି ସହଳ
ବହଳ ଶରଧା ବୋଳି || ୩||
-
ପୁଣ୍ୟରଥ ଧରି ଶୂନ୍ୟପଥ ବରି
ଘୃଣ୍ୟ କୃତ୍ୟ ପରିହରି,
ହଜି ଯିବି ଧୀରେ ଅସିତ ତିମିରେ
ଭବ ସାଗରୁ ନିଃସରି ||୪||
-
ଲଲାଟେନ୍ଦୁ କବି
୦୧୮୦୨୧୩୦୧୨୪

## ଶ୍ରାବଣୀ ବେଳାରେ ପ୍ରେୟସୀବାଳାକୁ ଅଭିସାର ସମ୍ଭାଷ

= -051
ଶତପତ୍ରର ଲାସ୍ୟ, ଖସିଲେ ବର୍ଷା ବୃକ୍ଷ-ଶାଖେ;
ଶିଖିନୀର ନାହିଁ ଚନ୍ଦ୍ରିକା ବୋଲି କଞ୍ଜାର ନାଟ ଦେଖେ |
ପ୍ରାନ୍ତରେ ଭିଜା ଦୁର୍ବା ତିରଣେ ଦର୍ଦ୍ଦୁର କରେ ଭେରୀ;
ଦୀନା ଦର୍ଦ୍ଦୁରା ଦାର୍ଦ୍ଦୁର କୂଳେ ଶୁଣୁଥାଏ କାନ ଡେରି |
ଶୁଣେ -- ଚକ୍ରପକ୍ଷାପୁଣ
ଜଳେ ଉଦ୍ଧଳ କାଳକଣ୍ଠର ବଜ୍ର-ସମ୍ଭାଷଣ || -୧

ଶ୍ରାବଣ ଆସିଲା ତା ସାଥେ ହସିଲା ଶ୍ରାବଣୀ ମୃଦୁଳା ବାଳା;
ଶୀତଳ ବର୍ଷା- ବତାସ ସଙ୍ଗେ ପ୍ରୀତି-ସଙ୍ଗୀତ ବେଳା |
ଭାମିନୀ ପ୍ରେମିନୀ ! ସୌଦାମିନୀର ଚଞ୍ଚଳ ପଦ-ପାତେ;
ବଲ୍ଲଭ ପ୍ରାଣ ଯୌବନ ଭରି ଯାଏ ଉନ୍ମନା ଗୀତେ !
ଆସ -- ଆସ ଅଭୀଷ୍ଟା ଆସ;
ହତାଶ ବିରହୀ ଖର ନିଃଶ୍ୱାସେ ଭରି ଦିଅ ଉଚ୍ଛ୍ୱାସ ||-୨

ନିର୍ଝରୀ ଝରି ଔପଳ କୂଳେ କାଳସୂର୍ଯ୍ୟର ଜଳେ
ହାରିବ ବୋଲି ତା' କୁଳ-ଅଦ୍ୱୟ ଆକୁଳେ ଅଗ୍ରେ ଚଳେ |
ପକ୍ଷ ପ୍ରସାରି ପୁଷ୍ପ-ଶିକାରୀ ମଧୁ-ଷଟ୍ପଦ ଛଳେ,
ପ୍ରୀତି-ଉଦ୍ଧୁତା ମଞ୍ଜରୀ-ବାଳା ତନୁ-ତର୍ପଣ ଢାଳେ |
ଆଜ -- ଅବଗୁଣ୍ଠନ ଖୋଲି,
ଯୁଗଯୁଗାନ୍ତ କୀର୍ଣ୍ଣା କାମିନୀ କନ୍ଧରେ ଯାଅ ଝୁଲି ||-୩

ଲଲାଟେନ୍ଦୁ କବି ୨୦୧୭-୦୬-୦୧/୦୪:୩୦
ଶବ୍ଦାର୍ଥ:-

ଶତପତ୍ତ୍ର, ,ଶିଖୀ, କଞ୍ଜାର= ମୟୂର; ଶିଖିନୀ= ମୟୂରୀ; ଲାସ୍ୟ= ନାଚ; ଦର୍ଦ୍ଦୁର= ବେଙ୍ଗ; ଦୀନା= ଦୁଃଖିନୀ (ବେଙ୍ଗୁଲୀର ସ୍ୱରତନ୍ତ୍ରୀ ନାହିଁ ବୋଲି ) ଦାର୍ଦ୍ଦୁର= ବେଙ୍ଗ ଖେଳୁଥିବା ପାଣି; ଚକ୍ରପକ୍ଷ, କାଳକଣ୍ଠ= ରାଜହଂସ; ଉଦ୍ଧଳ= ଗଳା ଉପରକୁ ଟେକିଥିବା; ଶ୍ରାବଣୀ= ଶ୍ରାବଣ ମାସର ପୂର୍ଣ୍ଣିମା ତିଥି; ବଲ୍ଲଭ= ପ୍ରେମିକ; ଔପଳ= ଉପଳମୟ; କାଳସୂର୍ଯ୍ୟର ଜଳ= ପୃଥିବୀର ସମାପ୍ତି ସ୍ଥାନରେ ଥିବା ସୂର୍ଯ୍ୟ, ତା' ଜଳ (ସମୁଦ୍ରକୁ କହିଛି); ଅଦ୍ୱୟ= ପରିଚୟ; ମଧୁ-ଷଟ୍ପଦ= ଭ୍ରମର; ପ୍ରୀତି-ଉଦ୍ଧୁତା= ପ୍ରେମ୍‌ଦିଵାନୀ; ମଞ୍ଜରୀ-ବାଳା= ଫୁଲ-ଝିଅ; ଅବଗୁଣ୍ଠନ= ଓଢଣି,ପର୍ଦା; କୀର୍ଣ୍ଣ= ଆହତ, ଲୁଚିଥିବା, ଅବଦମିତ ଥିବା; କନ୍ଧର= ବେକ;

## ଶ୍ରାବଣ-ସଂଳାପ -052

=========

ନିବିଡ ରାତ୍ର କୃଷ୍ଣ ତିମିର
ଅନ୍ଧ ଦମିତ ଧରା
ବକ୍ଷସଚିରା ଗର୍ଜନଗିରା
ଗୋଘୃତ ବାରିଧାରା | |୧

ଦର୍ବରୀକର କାର୍ମୁକଧାରୀ
ଉଗ୍ରା ଆହ୍ଲାଦିନୀ
ଲାସ୍ୟଲସିତା ଅମ୍ବୁଦସୁତା
ରୁଦ୍ରା ସୌଦାମିନୀ | |୨

ବନ୍ୟା ପ୍ଲାବିତା    ସନ୍ନା ରସିତା
  ଅର୍ଣ୍ଣା  ଧାବିତା ଖରା;
କାନନ ସ୍ତବ୍ଧ    କେଦାର କ୍ଷୁବ୍ଧ
  ଗୋଧନ ଧର୍ତ୍ରେ ଧୀରା |    |୩

ଅମାପ ଶକ୍ତି,    ପଙ୍କ୍ତି ପଙ୍କ୍ତି
  ବଜ୍ର-ଶସ୍ତ୍ରଧାରୀ
ଶୁଣ ଗୋ ଇନ୍ଦ୍ର-   ଗୋପିକା-ମିତ୍ର
  ମଧୁଷଦ୍ବଦ-ଅରି  --       |୪

ପ୍ରତ୍ନ ସେ ନବ-   ରତ୍ନ-ଶ୍ରେଷ୍ଟେ
  ଯତ୍ନେ ଦେଇଛ ଗୀତି;
ଶାବ୍ଦୀପୁତ୍ର       ପାତ୍ରେ ଦିଅ ଗୋ
  ଅଳ୍ପ ମାତ୍ର ରତି |          |୫

ଦମିତ= ବଶୀଭୂତ; ଗୋଘୃତ= ବର୍ଷା; ଦର୍ବରୀକ= ଇନ୍ଦ୍ର; କାର୍ମୁକ= ଧନୁ; ଅହ୍ଲାଦିନୀ= ଅନନ୍ଦକାରିଣୀ; ଲାସ୍ୟଲସିତ= ନାଚି ଖେଳୁଥିବା [ସ୍ତ୍ରୀ: ଲାସ୍ୟଲସିତା]; ସନ୍ନା= ଅବସନ୍ନା; ରସିତ= ଗର୍ଜିତ, ସ୍ତ୍ରୀ: ରସିତା; ଅର୍ଣ୍ଣା- ନଦୀ; ଖର= ଉଗ୍ର, ସ୍ତ୍ରୀ: ଖରା; ଧର୍ତ୍ର= ଘର; ଧୀର= ; ଶାନ୍ତ, ସ୍ତ୍ରୀ ଧୀରା; ଇନ୍ଦ୍ରଗୋପିକା= ସଧବପୋକ; ମଧୁଷଦ୍ବଦ= ପ୍ରଜାପତି ; ପ୍ରତ୍ନ= ପ୍ରାଚୀନ; ନବରତ୍ନ-ଶ୍ରେଷ୍ଠ= କାଳିଦାସ; ଶାବ୍ଦୀ= ସରସ୍ବତୀ; ଶାବ୍ଦୀପୁତ୍ର= ମୁଁ ନିଜେ; ରତି= ଗତିଶୀଳତା, ସୌଭଗ୍ୟ, ଆକ୍ରମଣାତ୍ମକତା;

ଶାବ୍ଦୀପୁତ୍ର ଲଲାଟେନ୍ଦୁ କବି (ଶାବ୍ଦୀମାତା ଶରଣମ୍)

## ବିଷାଦୀ ବୈଭାବର          -053
(The Sad Nocturnal)

ବିଜନ  ମଉନ  ରଜନୀ  ଏ ଘନ
 ଏଥି -- କେ ତୁମ ନିଦ୍ରା-ହର
   କହ --  କେ ରଖେ ଉଜାଗର ? ୧||

ମିଠା କବିତା

ନାହିଁ ତ ଓଜର ନାହିଁ କେ ନିଜର;
ବସି -- ଶୁଣ କା ଖିନ୍ନ ସ୍ୱର ?
ଛୁଟେ -- କା ଲାଗି ନେତ୍ରୁ ଝର ? ୨||

"ଜଗତ ଯାକର ସଭିଏଁ ନିଜର
ଶୁଣି -- ସବୁରି ଅନ୍ତଃ--ସ୍ୱର
ମୋର -- ନୟନେ ଅଶ୍ରୁ-ଝର || ୩||

ମୁଖର ଦିବସେ ଆତୁର ବିବଶେ
ଥାଏ -- ବେଦନା ସ୍ତର ସ୍ତର;
ଦେଖି -- ସାଜେ ମୁଁ ରାତ୍ରି-ଚର || ୪||

ଆଶାର କାସାର ନିମିଷେ ଫସର;
ଏଇ -- ଜଗତେ ବାରମ୍ବାର
ଜାଣି -- ମୁଁ ଆଜି ଶର୍ଯ୍ୟାଚର || ୫||
କାସାର= ପୁଷ୍କରିଣୀ, ହ୍ରଦ;

ସଂସାର ଜୁଆର ତୋଳି ତା ଫୁଆର
ଭାଙ୍ଗେ -- ସପନ ଗନ୍ତାଘର;
ସବୁ-- ଦେଖେ ଏ ଚକ୍ଷୁ ମୋର: ୬||

ମୁଁ ସେ -- ଅଧମ ନେତ୍ର-ଧର;
ଗୋଟେ -- ପ୍ରମାଦୀ ସାର୍ବ-ସ୍ୱର ||
ବଡ -- ବିଷାଦୀ ବୈଭାବର ||୬+||
ସାର୍ବ= ସର୍ବ ସମ୍ବନ୍ଧୀୟ, ବୈଶ୍ୱିକ, universal;

ଲଲାଟେନ୍ଦୁ କବି ୨୦୧୭୧୨୧୬୧୫

## ମରୀଚିରେ ସରିଚି -054

ଏ କ୍ରତୁ ପୁଲହ ପୁଲସ୍ତ୍ୟ ଓ ଅତ୍ରି
ଅଙ୍ଗିରା ବଶିଷ୍ଠ ମରୀଚି,
ସାତ ଋଷିଙ୍କର ତାରକା ମଣ୍ଡଳ
ଏହିଠାରେ ବାବୁ ସରିଛି | -୧-

ଶେଷ ଦୁଇଟିକୁ ଯୋଡି ଯେବେ ବାପା
ଟାଣିଦେବୁ ରେଖା ଏକ,
ଉଜ୍ଜ୍ୱଳ ନକ୍ଷତ୍ର ଦେଖିବୁ ଯାହା ସେ
ଧ୍ରୁବତାରା ମନେ ରଖ | -୨-

ସୂର୍ଯ୍ୟ ଚନ୍ଦ୍ର ଗ୍ରହ ଜ୍ୟୋତିଷ୍କ ନକ୍ଷତ୍ର
ସଭିଏଁ କରନ୍ତି ଗତି,
ଏକା ଧ୍ରୁବତାରା ସ୍ଥିର ସବୁଦିନେ
ଉତ୍ତର ଦିଗେ ତା ସ୍ଥିତି | -୩-

ଧ୍ରୁବତାରା ପରି ଅଟଳ ରହିବୁ
ନୀତିରୁ ହଟିବୁ ନାହିଁ,
କିଛି ନ ଦେ ମୋତେ, ମଲେ ନିଆଁ ଦେବୁ,
ଶେଷ ଇଚ୍ଛା ଦେଲି କହି |-୪-

ବାଲୁତ ବୟସେ ବୁଝିଲି କିଛି ମୁଁ
ପିତାଙ୍କ ଶେଷ ବଚନ,
ଛାତେ ସପ ପାରି ଶୋଇଥିଲୁ ଆମେ,
ସେ ଥିଲା ଗ୍ରୀଷମ ଦିନ | -୫-

ବଡ ହେଲି ଯେବେ ଛାଡ଼ି ଭିଟାମାଟି
ଆସିଲି ବିଦେଶ କରି,
ବୁଡି ରହିଲି ମୁଁ ଜଞ୍ଜାଳ ଭିତରେ,
ଧରି ଦୁଇ କନ୍ୟା, ସ୍ତିରୀ |-୬-

ଶିଶୁ କନ୍ୟା ଦୁହେଁ ଶିଖିଲେ ମୋ' ଠାରୁ
ଚିହ୍ନି ସେହି ଗ୍ରହ ତାରା,
ବଡ ଝିଅଟି ତା' ଜେଜେବାପାଙ୍କର
ସାଜିଲା ଦୁଃଖ-ପାଶୋରା | -୭-

କାଳର କବଳେ ଜେଜେବାପା ତା'ର
ଗଲେ ଦୁନିଆଁରୁ ଚାଲି,
ଜୀବନରେ କିଛି ଦେଇ ତ ନ ଥିଲି,
ମୁଖାଗ୍ନି ଟିକକ ଦେଲି | -୮-

କିଛି ଦିନ ଗତେ　　　ପୁଣି ସେଇ ଛାତେ
　　ଶୋଇଥିଲୁ ଆମେ ଯେବେ,
ଝିଅ ପଚାରୁଛି –　　　ଜେଜେବାପା ବି ତ
　　ତାରା ହେଇ ରହିଥିବେ |　　　-୯-

ସପ୍ତର୍ଷି ମଣ୍ଡଳ　　　ନକ୍ଷତ୍ର ଭିତରେ
　　ଜେଜେବାପା କିଏ ମୋର ?
କହି ଦିଅ ବାପା　　　ମନ ମୁଁ କରିଛି,
　　କରିବି ତାଙ୍କୁ ଜୁହାର |　　　-୧୦-

ଝିଅ କଥା ଶୁଣି　　　ଜିଭ ଶୁଖି ଗଲା;
　　କହିଲି ଏତିକି ଭାଷା –
ମରୀଚିରେ ମାଆ　　　ସରିଚି ରେ ସବୁ,
　　ନ କର ଆଉ ସେ ଆଶା |　　　-୧୧-

ଲଲାଟେନ୍ଦୁ କବି　　୨୩ ଜୁଲାଇ ୨୦୧୪

## ରଙ୍ଗଭୂମେ ଦୃଶ୍ୟାନ୍ତର　　　-055

ରଙ୍ଗଭୂମେ ଦୃଶ୍ୟ ଦୃଶ୍ୟାନ୍ତର;
　　ଜନ ମନେ ନଟ ଅବତରି
ଭାଳେ କେତେ ଅଭିନୟ ବାକି,
　　ନାଟକଟା କେବେ ଯିବ ସରି ||-୧

ସରି ନାହିଁ, ସରେ ନାହିଁ କେବେ
　　ଏ ଜଗତେ କାହା ଅଭିନୟ;
ନାଟ୍ୟମଞ୍ଚେ ମଧ୍ୟାନ୍ତର ହେଜି
　　ନଟ ଖୋଜେ ନିଜ ପରିଚୟ ||　-୨

ଅନ୍ତହୀନ ପଥ ଅନୁସରି
　　ଜୀବନାଟା ଯାଏ ହଜି ହଜି;
ପଥ କିନ୍ତୁ ସରେ ନାହିଁ ଜମା
　　ଦିଶା ପାରେ ଲକ୍ଷ୍ୟ ଖୋଜି ଖୋଜି ||-୩

ମାୟା ସବୁ ଛାୟା ସମ ଶେଷେ
ଆଖି ଆଗେ ଆସେ  ଭାସି ଭାସି;
କିଏ ଭୟେ ଚକ୍ଷୁ ଦିଏ ମୁଦି,
କିଏ ଦେଖେ ନୟନ ଉନ୍ମେଷି ||-୪

ପଥ ପ୍ରାନ୍ତେ ଆତ୍ମୀୟ ସୋଦର-
ପ୍ରୀତି ପାଛ ମନେ ଦମ୍ଭ ଭରେ;;
ଅନ୍ୟଥା ସେ ପଥିକ ଯାଆନ୍ତା
କେଉଁ ଦିନୁ ହଜି ଅନ୍ଧକାରେ ||    -୫

ଆନ ଏକ ରଙ୍ଗଭୂମି ତଳେ
ଖୋଜି ନେଇ ନୂତନ ଭୂମିକା;
ନବ ହର୍ଷେ ନବ କଳେବରେ
ଖୋଜନ୍ତା ସେ ନୂଆ ବନ୍ଧୁ, ସଖା ||- ୬-

## କବି-ହୃଦ-ଉଦ୍‌ବେଳନ -056

============
ରବି ତଳେ କବି        ତୁମେ ଅନୁଭବୀ
ଛବି ଆଙ୍କିଯିବ ବୋଲି
ଭାବ ପଟୁଆର        ହେବାକୁ ଜୁଆର
ଦୁଆର ରଖିଛ ଖୋଲି ।    ୧

ପ୍ରହର ପ୍ରହର        ପିଉଛ ଜହର
ନଗର ସହର ବୁଲି,
ବୁଲି ଗ୍ରାମ ଗ୍ରାମ        ନାମ କାମ ଧାମ
କାହାର ଯାଉନ ଭୁଲି ।    ୨

ପତରଝଡାରେ        କଳିଝଗଡାରେ
ବାଲିଘରଗଢା ବେଳ,
ପୁଷ୍କରିଣୀବେଢା        ଉର୍ବୀରୁହ ଚଢା
ବାଲିଗରଡାରେ ଖେଳ ।    ୩

ଉର୍ବୀରୁହ= ଗଛ;

ବୟସଯାକର        ପରଶକାତର
ଘଡି ଗୋଟି ଗୋଟି କରି
କବିତାର ତରୁ        ସସ୍ତାର ଅନ୍ତରୁ
କାବ୍ୟରୂପେ ପଡେ ଝରି ।    ୪
_ସସ୍ତାର= କବି, ଚିତ୍ରକର;

ସ୍ମରି ଅନୁକ୍ଷଣ        ଅପର କଷଣ
କର୍ଣ୍ଣିକା କର ଚାଳନ,
କିଏ ଅଛି କାହିଁ        ଲେଖିବାର ପାଇଁ
ତୁମ ହୃଦ-ଉଦ୍ ବେଳନ ?    ୫
କର୍ଣ୍ଣିକା= କଲମ;

ବାଣୀପୁତ୍ର ଲଲାଟେନ୍ଦୁ କବି    ୨୦୧୮

## କାଳେ କାଳେ ଯଉବନ, କେତେ ନେବ ନିଅ

-057

ନୁହଁ -- ଏମିତି ସେମିତି ଜଣେ
ମୁଁ ତ -- ଗୋଟିକେ କାହାଣେ ପଣେ;
ତୁମ ପାଇଁ ଏଠି ଦୋକାନ ଖୋଲିଛି
ଯାହା ପାଇବାର ସବୁ ମୁଁ ରଖିଛି
ଆସ -- ନେବ ହେଲେ ଜଣେ ଜଣେ,
କାହିଁ -- ଯାଅ ନାହିଁ ଏଣେ ତେଣେ ||୧

ଯିଏ -- ସମ୍ଭାଳି ପାରିବ ଆସ
ପାଖେ -- ହାଲିଆ ମେଣ୍ଟେଇ ବସ;
ରୁଣ୍ଡେଇ ପୁଣ୍ଡେଇ ନେଇଯାଅ ଭାଇ,
ମୋ ସଉଦା ପାଇଁ ଧନ ଲୋଡ଼ା ନାହିଁ
ତାକୁ -- ନଗଦ ବାକିରେ କିଣ;
ଲୋଡ଼ା -- ମାତର ଗୋଟିଏ ମନ ||୨

ଭାଇ -- ଭାଉଜକୁ ଦେବ ନେଇ,
ନାନୀ -- ଭିଣେଇକୁ ଦେବ ପେଇ,
ବୋହୂ-ପୁଅ ନେବେ ଝିଅ ଜୋଇଁ ଥିବେ
କୁଣିଆଁ ପଡ଼ିଶା ସଭିଏଁ ଚାଖିବେ
ତୁମ -- କୋଥଳି ମେଲେଇ ଦିଅ,
କେତେ -- ମୁଣ୍ଡେଇ ପାରିବ ନିଅ ||୩

ଆଉ -- ଏମିତି ଦୋକାନ ନାହିଁ
ଡାକି -- ମାଗଣା ବିକିବ କେହି;
ମିଳିବ ଛାତିର ଗରମ ବତାସ
ଗଳାରେ ଲାଗିଲେ ଲାଗିବ ହୁତାସ
ଏଠି -- ଲୁହ ସାଙ୍ଗେ ମିଳେ କୋହ
ସହି -- ପାରିବ ତ ନେଇ  ସହ ||୪

ଯେବେ -- ବସିଥିବ ଏକା ଏକା
ମନ -- ଲାଗୁଥିବ ଥକା ଥକା
ହାଲୁକା ଲାଗିବ ଫିଟେଇ ଦେଖିବ
ନିଶୂନ ଘରଟା ଭରି ପୂରି ଯିବ
ମଥା -- ଭାବନାରେ ଯିବ ବୁଡି
ଭୂଇଁ -- ପାଦ ତଳେ ଯିବ ଦବି ||୫

ଖାଇ -- ପିଠି ସାରା ଟାଣ ଖରା,
ଫେଇ -- ବସିଛି ତୁମ ପସରା;
ନିଅ, ଛୁଆଙ୍କଠୁ ଢାଙ୍କି ଟେକିବ
ବୁଢ଼ା-ବୁଢ଼ୀ ଥିଲେ ଲୁଚେଇ ରଖିବ,
ଆସ -- ସମ୍ଭାଳି ପାରିବ କେହି
ଅଣ୍ଟି -- ଗଣ୍ଠି ଦିଅ ଫିଟେଇ ||୬

ଇଏ -- ପୁରୁଣା ହୁଏନି କେବେ
କାଳେ -- କାଳେ ଥାଏ ନୂଆ ଭାବେ
ଛନକା କରେ ତା' ବାଙ୍କ ଚାହାଣୀ
ଫାଙ୍କା ମନରେ ଆଙ୍କେ ଉଜାଣି
ପୁଣି -- ଘଡ଼ିକେ ଘଡ଼ିକେ ଆନ,
ତାର -- କାଳେ କାଳେ ଯଉବନ ||୭

ମିଠା କବିତା

ଏବେ -- ବୁଝି ନ ପାରିଲେ ନାହିଁ
ତୁମ -- ପାଇଁ ମୋର ଭାଷା କାହିଁ,
ଦୋକାନ କେମିତି ବନ୍ଦ ରଖିବି,
ଏ ମିଠା ପସରା ଏକେଲା ଖାଇବି ?
ମୋର -- ଭାବିଲେ ସହୁନି ଦିହ,
ତୁମ -- ଭାଗଟା ଜଲଦି ନିଅ ||୮

ଲଲାଟେନ୍ଦୁ କବି

୨୫-୦୯-୨୦୧୬

## ମୁଁ ବି ଲେଖିବି -058

ପଢିବାକୁ ଭଲ ପାଏ ବୋଲି
ପଢେ କେତେ କାହାଣୀ କବିତା,
ମନେ ରଖେ, କିଛି ଯାଏ ଭୁଲି,
କେଉଁଥିର କିଏ ରଚୟିତା | ୧

ଭଲ ପାଏ ହସ ଖୁସି କଥା,
ରଜା ପୁଅଝିଅ ବାହାଘର,
କାହାଠି କା ହେଲା ଆତ୍ମୀୟତା,
ହଜି କିଏ ମିଳିଲା ନିଜର | ୨

ମନ ଖୋଜେ ସାଙ୍ଗସାଥୀ ମେଳେ
ଖେଳ କୁଦ ଭ୍ରମଣ କାହାଣୀ,
ଅଜାଣତେ ପଢି ବେଳେ ବେଳେ
ଦୁଃଖ ଗୀତ, ଝରେ ଆଖି ପାଣି | ୩

ଅତି ବେଶି ଲୁହ ଯେବେ ଝରେ
ରାଗି ଦେଖେ ଲେଖିଅଛି କିଏ,
ଦେଖିଲେ ତା ଲେଖା ପୁଣି ଥରେ
ଡରି ପଢେ ଟିକିଏ ଟିକିଏ |

ଏହି ପରି ପଢି ଧୀରେ ଧୀରେ
ସେଥି ପାଇଁ ଆସିବାରେ ରୁଚି,
ଦୁଃଖଗପଗୀତ ପଢି ପରେ
ଏକା ଏକା କାନ୍ଦେ ଲୁଚି ଲୁଚି | ୫

ଯିଏ ବେଶି ପାରିଛି କନ୍ଦାଇ,
ସେ ବି ମୋତେ ଲାଗିଲାଣି ଭଲ,
ମନ କହେ ତା ପାଶରେ ଯାଇ
ଝରାନ୍ତି କି ମୋର ନେତ୍ରଜଳ | ୬

ଏହିପରି ଭାବୁଭାବୁ ଥରେ
ତୁମ ସାଥେ ହେଇଥିଲା ଚିହ୍ନା;
ମଜ୍ଜି ତୁମ କବିତା ଭିତରେ
ଶୂନ୍ୟ ଲାଗେ ତୁମ ଗୀତି ବିନା | ୭

କହିବାରେ ପଚାରିଲ ତୁମେ
"ଅଳିଅଳି, ହେବୁ କି ଦୁହିତା ?
ପୋତି ଦେବି ମୋ ଗୀତି କୁସୁମେ;"
ଅଶ୍ରୁଜଳେ ଡାକିଲି ମୁଁ, "ପିତା !" ୮

ତେବେ ଠାରୁ ନିତି ଅଜାଣତେ
ତୁମ ସାଥେ ବାଢୁଛି ମମତା,
ତୁମ ଗୀତେ ପ୍ରତି ପଦପାତେ
ଦେଖୁଛି ମୁଁ ଜଗତର ବ୍ୟଥା | ୯

ପଢିବି ମୁଁ ଲେଖ ନିରନ୍ତରେ
ଲୁହ ଝରା ବିଷାଦ ଗୀତିକା;
ମୁଁ କି ତୁମ ଅମଡା ଡଗରେ
ଏବେ ବି ସେ ଅଜଣା ବାଳିକା ? ୧୦

ମୁଁ ତ କେବେ ଲେଖି ନାହିଁ ଗୀତ
କେବେ କେବେ ଲେଖେ ଆଖ୍ୟାୟିକା;
ଲେଖି ଦୀନ ଦୁଃଖୀର ଚରିତ
ନିଶ୍ଚେ ଦିନେ ହେବି ସୁଲେଖିକା | ୧୧

**ମିଠା କବିତା**

ଲଲାଟେନ୍ଦୁ କବି    ୨୦୧୯୦୫୦୬୦୧୦୨

**ବିରହିଣୀ**                    -059

--------

ମଉଳା ମନରେ
ଝାଉଁଳା ଫୁଲଟା
ସାଉଁଳିଲା ବେଳେ
        ସେ ଫୁଲ ବୋଲେ ___
ହଜିଲା ଦିନଟା
ଖୋଜିଲେ ମିଳେ କି ?
ପୋଡ଼ିଲା ସଳିତା
        ଆଉ କି ଜଳେ ?-୧

ଉଆଁସ ନିଶୀଥ
ସପନ ଉଆସ
ବତାସ ନ ଥାଇ
    ପଡ଼ିବ ଧସି;
ଆକୁଳେ ସକାଳେ
ପୁଷ୍କରିଣୀ କୂଳେ
ପ୍ରେୟସୀ ବେଶରେ
      କି ଲାଭ ବସି ?-୨

ଅଳସ ବାସର
ବିରସ ଶର୍ବରୀ
ବିବସ ବସନେ
     ସାଇତା ଲୁହ
ଆଖିରୁ ନିଗାଡ଼ି
ହେବ କି ସଜାଡ଼ି
ବିରହ ଭାବନା
     ଅଡୁଆ ଖିଅ ?-୩

ଶରତ ଶିଶିରେ
ଗ୍ରୀଷ୍ମ ଘର୍ମରେ
ବରଷା ବାରିରେ
ବରଷ ସାରା
ଆଖି ଜଳ ଢାଳି
ସଞ୍ଜବତୀ ଜାଳି
ସାଉଁଟି ହେବ କି
ସୁଖ ପସରା ?-୪

ଲଲାଟେନ୍ଦୁ କବି
୨୦୧୬୧୨୧୦ – ୧୨୫୫

## ଗଳାର ଗଳ୍ପ ମୋର -060

==========

ତୁଳୀର ତଳ୍ପେ
କଳାର କଳ୍ପେ
ଜ୍ୱାଳାର ଜଳ୍ପ
ଗଳାର ଗଳ୍ପ ମୋର |
ସବୁ ଝାଡ଼ି ଝୁଡ଼ି
ଯୋଡ଼ି ଧାଡ଼ି ଧାଡ଼ି
ସଜାଡ଼ି ରଖିଛି
ଉଜାଡ଼ି ନୟନ ନୀର ||୧
(ହେଲେ ,)
କଜଳ-ସଜଳା
ଚଳନ-ଚପଳା
କୋମଳ-କମଳା
ଆ ଲୋ ଆଲୋଳା ଲଳନା |
କଲମ ସ୍ୟାହିରେ
ମଲମ କାହିଁରେ
ମରମ ଗହୀରେ
ପାରିବ ମାରି ବେଦନା ||୨

ଏ ଜୀବନ ଗୁଡ଼ି
ଛିଡ଼ାଇ ଦଉଡ଼ି
ଯାଏ ଉଡ଼ି ଉଡ଼ି
  ମେଘ ଘଡ଼ଘଡ଼ି ଦେଶେ |
ଘଡ଼ି ଘଡ଼ି ନାଡ଼ି
ଯାଏ ଛାଡ଼ି ଛାଡ଼ି,
ଝଡ଼ି ବରଷାକୁ
  ଭରସି ଉଡ଼େ ଆକାଶେ ||୩

ତୋତେ ଦେଲି ତୋଳି
ଅଲିଅଳି ବାଳୀ
ନୟନ ପୁତ୍ତଳି
  ସମ୍ଭାଳି ରଖ ଆଦରେ |
ମୋ ହାତ କବିତା
ବ୍ୟଥାତୁରା ଗାଥା
ଥିଲେ ବିଜନତା
  ତରାସିବୁ ଥରେ ଥରେ ||୪

ଆରେ,
ଏକା ଏକା କେବେ ଥରେ,
କେବେ,
ମନେ ହେଲେ ମଉନରେ,
ଏଠୁ,
କେବେ ମୋର ଯିବାପରେ;
  ଦୂର ଦେଶେ ସେହି
  ଯେ ଗାଆଁରୁ କେହି,
ଫେରି ନାହିଁ ଯାଇ ଥରେ ||

ଲଲାଟେନ୍ଦୁ କବି
୦୨-୦୪-୨୦୧୬
◌୍

## ମିଠା କବିତା

ପ୍ରେମଫୁଲ -061

**ପ୍ରେମଫୁଲ - [ଭାଗ-୧]**

କେଉଁ ଦେଶେ ଯିବୁ ପକ୍ଷୀ
ଟିକି ଟିକି ଡେଣା ମେଲି;
ଘେନି ଯା ସନ୍ଦେଶ ମୋର,
ଚିଟାଉ ତୋ ହାତେ ଦେଲି ||0||

ଯେ' ଆକାଶେ ଫୁଟେ ନିତି
ଜାତି ଜାତି ପ୍ରେମ-ଫୁଲ;
ସେ ଦେଶେ ଯାଇଛି ସାଥୀ
ଖୋଜି ପ୍ରେମ-ଫୁଲ ମାଳ ||

ସେ ଫୁଲ ଗୋଟିଏ ପାଇଁ
ଅଝଟ ଯେ କରି ଦେଲି;
ଯାଇଛି ଅବୁଝା ସାଥୀ
ହାତେ ଧରି ଫୁଲ ଥଳୀ ||-୧

ପଦ୍ମ ମଧ୍ୟେ ପଦ୍ମ ଆନ:
ପ୍ରେମ-ଫୁଲ ମନଜିଣା;
ଦେଖିନି କେ' ଶୁଣେ କାନ
ସେ କଥା କି ତାକୁ ଜଣା !!

ପ୍ରେମ ଭୋଳେ କହି ଦେଲି
ସେ ଫୁଲ ଆଣି ଦେ ବୋଲି,
ବୁଝିଲାନି ଥଟା ମଜା,
ଯାଇଛି ସେ ଫୁଲ ତୋଳି || -୨

ଜହ୍ନ ମଧ୍ୟେ ଜହ୍ନ ପରି
ସେ ଫୁଲ ପାଖୁଡ଼ା ଦିଶେ,
ମିଳେ ନା ତ ସରଗରେ;
ମିଳିବ କି ପ୍ରେମ-ଦେଶେ ||

ସାରା ରାତି ଲେଖିଛି ରେ
ଲେଖିଛି ରକତ ଢାଳି ,
ଘେନି ଯା ସନ୍ଦେଶ ମୋର,
ଚିଟାଉ ତୋ ହାତେ ଦେଲି || -୩

ଜଳରେ ଅନଳ ଶିଖା
ପରି ଝଳେ ତା କେଶର,
ନାହିଁ ତିନି ଲୋକେ ଦେଖା
ସେହି ପ୍ରେମ-ଫୁଲ ମୋର ||

ସାଥୀ ମୋର ଗଲା ଦୂରେ
ସେ ଫୁଲ ଆଣିବ ତୋଳି
କାନ୍ଦି କାନ୍ଦି ଅନ୍ଧକାରେ
ଭାଳେ ମୁଁ ଗୋ ଏକି କଲି || -୪

**ପ୍ରେମ-ଫୁଲ [ଭାଗ-୨]**

ଶାଖୀ ଚୂଳେ ଶାଖା କୋଳେ
ପକ୍ଷୀ ଢାଳେ ଆଖି-ଜଳ;
ମଥିତ 'ନଥିଲା' ଫୁଲେ,
ଫେରୁନି ପ୍ରେମ-ପାଗଳ || 0||

ଖୋଜି ବୁଲେ ବନ ଗିରି
ଅଚଳ ଶିଖରୀ ଚୂଳ;
ଶୀତଳା ପାତାଳପୁରି
ଆକାଶ ବତାସ ଜଳ ||

ବ୍ୟଥିତ ଉପୃତ କହେ –
ବିଧାତା ହେ ଏ କି କଲ;
ପ୍ରେମରେ ବିରହ ଦାହେ
ଯଉବନ ଜାଳି ଦେଲ || -୫

ପାରିଲେନି କହି କେହି
ତରୁ ଲତା ଡାଳ ମୂଳ:
କେବେ ଫୁଟେ, କେବେ ନାହିଁ,
ଝଡ଼େ କେବେ ପ୍ରେମ-ଫୁଲ ||

ଭରି ସେ  ଅବୁଝା ସାଥୀ
ନୟନେ ପର୍ଜନ୍ୟ ଜଳ
ଫେରିବନି ମଥା ପୋତି,
ଧରି ଶୂନ୍ୟ ପ୍ରେମ-ଥାଳ ||  -୬

ଆହାର ବିହୁନେ ତନୁ
କୃଶ କଟୀ କରମୂଳ,
ରାତି ରାତି ନାହିଁ ରତି,
ନାହିଁ ଅନ୍ନ, ନାହିଁ ଜଳ ||

ପକ୍ଷୀ ଭାଳେ ପ୍ରୀତି ଖେଳ
ସର୍ବ-ଗହନ-ବିଶାଳ;
ନଭତଳ କି ଉତ୍ତାଳ,
କି ଅତଳ ସିନ୍ଧୁ-ଜଳ ??  || -୭

ଲଲାଟେନ୍ଦୁ କବି

ଶବ୍ଦାର୍ଥ:- ଶାଖୀ= ଶାଖାଧାରୀ, ଗଛ; ମଥିତ= ଆନ୍ଦୋଳିତ, ଆତୁର; ଗିରି= ପାହାଡ଼; ଶିଖରୀ= ପର୍ବତ; ଶୀତଳା= ବାଲି-ଭୂଇଁ; ଉପୃତ= ଚଢ଼େଇ; ଦାହ= ନିଆଁ, ଜ୍ୱର, ଜ୍ୱଳନ, ଉତ୍ତାପ; ପର୍ଜନ୍ୟ= ବର୍ଷା; ତନୁ= ଦେହ; କୃଶ=କ୍ଷୀଣ, ପତଳା; ସର୍ବ-ଗହନ-ବିଶାଳ= ସବୁଠୁ ଗଭୀର ଓ ବୃହଦାକାର; ଉତ୍ତାଳ= ଉଚ୍ଚ, ଡେଙ୍ଗା; ଅତଳ= ଗଭୀର, ଯାହାର ତଳ ମିଳେ ନାହିଁ

**ପ୍ରେମ-ଫୁଲ [ଭାଗ-୩]**

ଯୋଗୀ ପଢ଼େ – "ଭୋଗୀ ଆରେ !
ସେ ଫୁଲ ଅମୂଲ-ମୂଲ !
ପ୍ରେମ-ଦେଶେ ସୋମ-ନୀରେ
ଫୁଟେ ସେହି ପ୍ରେମ ଫୁଲ ||0||

ଆଣିବ କେ ଜଳ ସାଥେ
ଯାଇ ମାନସରୋବର ?
ବିଶ୍ରମିବ ନାହିଁ ପଥେ,
ପଡ଼ିବନି ଟୋପେ ନୀର ?

(ପୂରା ବଲେବମ୍ ପରି !
ନୋ ରେଷ୍ଟ ନୋ ସ୍ଲିପ୍ଲେଜ !)

ସେ ଜଳ ଏ ପ୍ରେମ-ଦେଶେ
ପଡ଼ିଲେ ମେଦିନୀ ତଳ
ଟୋପିଏରେ ଶୂନ୍ୟେ ହସେ
ଗୋଟିଏ ସେ ଫୁଲ ଡାଳ ||-୮

ଶିଡ଼ି ଥିଲେ ଯିବ ଚଢ଼ି,
ଡେଣା ଥିଲେ ଯିବ ଉଡ଼ି,
ଡାକିଲେ ଦି' ହାତ ଛାଡ଼ି
ସେ ଫୁଲ ପଡ଼ିବ ଝଡ଼ି ||"

(ଜଣେ ଯୋଗୀ ପୋଥିରୁ ଏହିପରି ପଢୁଥିବାର ଶୁଣି)

ପକ୍ଷୀ ଭାଳେ – "ଏତେ କାଳେ
ଜାଣି ଗଲି କଉଶଳ
ଜଳାଅନା ଯଉବନ,
ଫୁଟାଇବି ପ୍ରେମ-ଫୁଲ ||"-୯

ଉତ୍ତରକୁ ଗଲା ଉଡ଼ି
ଟିକି ଟିକି ଡେଣା ଝାଡ଼ି;
ବିନ୍ଦୁଏ ଚଞ୍ଚୁରେ ଭରି
ପକ୍ଷୀ ଆସିଲା ବାହୁଡ଼ି ||

ଥକି ଥକି ଆସେ ଡେଣା,
ତୃଷାତୁର, ବହେ ଝାଳ;
ନେଇନି ବିଶ୍ରାମ ଜମା,
ଢୋକିନି ଟୋପାକ ଜଳ ||୧୦

ତିନି ଦିନେ ଉଷା କାଳେ
ପ୍ରେମୀ ପାଶେ ମେଲି ପାଟି,
ଟଳିଲା ସେ ଭୂମି ତଳେ,
ଛାତି ତାର ଗଲା ଫାଟି ||

ଆକାଶେ ଫୁଟିଲା ଫୁଲ;
ପକ୍ଷୀ ତଳେ କଲବଲ;
ଉଡ଼ିଲା ସେ ଫୁଲ ଦେଖି,
ଝାଡ଼ି ଦେଲା ଫୁଲ ଡାଳ ||--୧୧

ପ୍ରେମୀ କହେ ବିଧାତା ହେ
ଗୁହାରି ଆଜି ଶୁଣିଲ;
ଯିବି ମୋ ପ୍ରେୟସୀ ପାଶେ,
ଏହି ତ ସେ ପ୍ରେମ-ଫୁଲ ||

ଖୋଲି ନାହିଁ ଆଖି ସେହି
ବିହଗ ଏ ମହୀପରେ;
ସେ ଦିନୁ ବିରହ ଦେଖି
ପ୍ରେମ-ପକ୍ଷୀ ଝୁରି ମରେ ||-୧୨

ଲଳାଟେନ୍ଦୁ କବି    ୦୧୭୦୨୦୨-୧୯୧୪

## ଆଉ ତୋଳ ନାହିଁ ଫୁଲ            -062

.

ତେବେ ତୋଳୁଥିଲ            ପର ପାଇଁ ଫୁଲ,
ଦେହ ଯାଉଥିଲା ସିଝି;
ଏବେ ଆଉ ଭାଇ!,            ତୋଳ କାହା ପାଇଁ ?
ରକତେ ଗଲଣି ଭିଜି !!୧ ||

ଧୂଳି ମାଟି ସାଥେ            କର ନାହିଁ ଏତେ
ଏବେ ମନ ଦିଆ ନିଆ;
ଢାଳି କେତେ ପାଣି            ପାରିବ କେଜାଣି

ଭିତରେ ଜଳିଲେ ନିଆଁ ॥୨॥

ତାଡି ସେହି ମାଟି ଛାତି ଯିବ ଫାଟି,
ମାଟି ଦେଖୁଥିବ ଖାଲି;
କରନା ଉଛୁର, ନିଶ୍ଚେ ହେବ ଘର,
ସେଠି ଆଜି ଅବା କାଲି ॥୩॥

ଟାଣପଣ ରଖି ଯାଉଅଛ ଥକି,
ଆହୁରି ଥକିବ ତୁମେ;
ଏବେ ଟିକେ ଭାଇ ବୁଲି ଆସ ଯାଇ
ଭିଜା ଭିଜା ମଉସୁମେ ॥୪॥

ଲଲାଟେନ୍ଦୁ କବି ୨୦୧୮୦୫୦୧୨୩୫୯

## ପାଳିଥିଲି ବାଘୁଣୀ ମୁଁ – ଶିକାରୀ -063

(ରଚୟିତା— ଲଲାଟେନ୍ଦୁ କବି)

ପାଳିଥିଲି ବାଘୁଣୀ ମୁଁ — ଶିକାରୀ;
ହେଲା — ଅପରୂପା ସିଏ ସୁନା ଗୋରୀ ||
ଭାଗ୍ୟେ — ଲେଖା ଥିଲା, ହେଲି ବନଚାରୀ

ଗହନ ସଘନ ବନେ ତୁହିନ ହରିଚନ୍ଦନେ
ଧରିଥିଲି ବନଶ୍ୱାନୀ — ବିଚାରୀ;
ତାକୁ – ପଞ୍ଜରକେ ରଖିଲି ଆଦରି || -୧

ପୂଜିଲି ପଞ୍ଜର ଦିନେ ସିନ୍ଦୂର ଘୃତ ଚନ୍ଦନେ;
ପିନ୍ଧାଇ ତାକୁ ସିନ୍ଦୂର — କସ୍ତୁରୀ;
ରାତ୍ର — ପାଲଟି ସେ ଗଲା ସୁନା ଗୋରୀ || -୨

ତା ରୂପରେ ହେଲି ଭୋଳ ପୀରତି ହେଲା ଉଚ୍ଛଳ
ଦିଶିଲା ସେ ଅପରୂପା — ସୁନ୍ଦରୀ
ଦୁହେଁ — ବସିଥିଲୁ ହାତେ ହାତ ଧରି || -୩

ଭାଷିଲା ଝଷ-ବାସିନୀ, ସ୍ୱଭାବେ ଯୋଷା କାମିନୀ
ମୋତେ ବରି ହେବ କି ମୋ — ଶୃଙ୍ଗାରୀ;
କଥା — ଦେଲି ତାକୁ ମଥାକୁ ଚୁଙ୍ଗାରି || -୪

ଶୁଣି ମୋ ବନ୍ଧୁ କୁଟୁମ୍ବ କହନ୍ତି, ହୀନସ୍ୱଭାବ
ଯାଉ ଆମ ବସତିରୁ — ବାହାରି;
ପୋଡ଼ା— ମୁହିଁ ସଙ୍ଗେ କୁଳ ଦେଲା ସାରି || -୫

ବାହା ତାକୁ ହେଲି ଯେବେ ମାଗିଲେ ବନ୍ଧୁବାନ୍ଧବେ
ତିରସ୍କାରୀ ପୁରସ୍କାରୀ — ଜୁହାରୀ
ନେଇ — କହିଲେ ଏ କୁଳର ଭଗାରୀ || -୬

ଲଲାଟେନ୍ଦୁ କବି
୨୦୧୭୦୪୦୨୧୭୫୨

ନିନ୍ଦା ମୋ ସହି ନ ପାରି ରାତିକେ ମୋ ହାତ ଧରି
ନେଲା ସିଏ ବନସ୍ତକୁ — ଓଟାରି,
ଗୁମ୍ଫା — ଖୋଳି କଲା ଘରଟେ ତିଆରି || -୭

ସେ ରାତି ମୋ ପାଶେ ବସି ଦେହ ମୋର ଦେଲା ଘସି
ଧଇଲା ମୋ ଛାତିକୁ ସେ — ଆବୋରି,
ସତେ — ଦେଲା କି ମୋ ପଞ୍ଜରା ବିଦାରି || -୮

ପ୍ରଭାତେ ଦେଖି ମୋ ହିଆ ସକେଇ କାନ୍ଦିଲା ପ୍ରିୟା
ବସିଲା ମୋ ପାଦ ପାଶେ — ଜୁହାରି,
ଦେଖି — ମଳି ଚମ ଯାଇ ଥିଲା ଚିରି || -୯

ସଞ୍ଜ ଆସିବାରେ ମାଡି ଗଲା ସେ କୁହାଟ ଛାଡି
ଫଳ ମୂଳ ଆସି ଦେଲା — ଅଜାଡି
ଖାଇ — ଶୋଇଥିଲା ଗଣ୍ଡିକୁ କଟାଡି || -୧୦

ମୋ ଆଖିରେ ନିଦ ଦେଖି ଉଠିଲା ପରାଣ ସଖୀ
ସେ ରାତି ସାଜିଲା ମୋର — ପ୍ରହରୀ,
ବନ — ଟ'ଉହଦୀ ଜଗିଲା ହୁଙ୍କାରି || -୧୧

ସେ ଦିନୁ ଗହନ ବନେ ଭ୍ରମି ସେ ଗିରି କାନନେ
ମୁଁ ତ ବନବାସୀ, ନୁହଁ — ସହରୀ;
ଦୁହେଁ — ଚଳୁ ଅଛୁ କପାଳ ଆଦରି || -୧୨

ଲଲାଟେନ୍ଦୁ କବି ୨୦୧୭୦୮୧୪୧୮୧୦

## ଘାସଫୁଲ 064

=====

ବହୁ ଚର୍ଚ୍ଚିତ
ଦେଲି ପାରିଜାତ
ତାହାକୁ ତୁମେ ତ
ଚିହ୍ନି ପାରିଲ ନାହିଁ;
କେମିତି ପ୍ରତୀତି
ହେବ ତୁମ ବତୀ-
ସଳିତାରୁ ତିଳେ
ବହ୍ନି ଜାଳିଲ ନାହିଁ ||୧||

ଆଖି-ଉଚ୍ଛଳ
ଅଶ୍ରୁର ଜଳ
ଢାଳି ଚଞ୍ଚଳ
ତୁମ ଆଶ୍ୱାସ ଆଶେ
ପାଦ ଚାଳି ଚାଳି
ଗଲି ଗଳି ଗଳି
ଉଥଳି ପୁଥଳି
ବୁଲି ବୁଲି ଦେଶେ ଦେଶେ ||୨||

ଆଉ କିଛି କାହିଁ
ଦେଖିଲି ତ ନାହିଁ
ଅରପିବା ପାଇଁ
ବିସ୍ମୟ ଦେବା ପରି;
ମନନ କ୍ଳାନ୍ତି
ଶରୀର ଶ୍ରାନ୍ତି
ମତିର ଭ୍ରାନ୍ତି
ଧରି ଆସୁଥିଲି ଫେରି ||୩||

ବୁଝିଲାନି ମନ
ମାୟା-ବନ୍ଧନ
ଭିତରେ ଶୂନ୍ୟ-
ହାତରେ ମିଳନ ମୂଲ;
ସାତ ଶରଧାରେ
ସାଉଁଟି ଆଣିଛି
ଶତ ଶତ ଘେନ
ଶୁଭ୍ର-ଦଶନ
ବାସହୀନ ଏଇ
ହସ ହସ ଘାସ ଫୁଲ ||୪

ଏବେ ସେଇଥିରେ
ଛୋଟ ମୋ ପୋଥିରେ
ଗୁନ୍ଥି ଦେବି ଗୋ
ପ୍ରୀତିଭରା ଗୀତି ହାର |
ପାରିଜାତ ଆଉ
ଖୋଜିବି କିଆଁ ମୁଁ
ଆଦରିଲେ ତୁମେ
ଛୋଟ ଏଇ ଉପହାର ||୫

ଲଲାଟେନ୍ଦୁ କବି ୨୬ ମେଁ ୨୦୧୬

**ମିଠା କବିତା**

ଦୁଃଖିନୀ -065

=====

ଉଦାସେ ସସ୍ସାର କିଏ ଲେଖିଲା ଗୀତିକା,

ଦୁଃଖିନୀ ଲୋତକ ହେଲା ମୁକୁତା କଣିକା ।

ସେ ରତ୍ନ ଦର୍ଶନ ଅଭିଳାଷେ ବର୍ଷାରାଣୀ,

ଧରାବକ୍ଷେ ଲୁଚି ଦେଲା ସଶ୍ରଦ୍ଧ ଚାହାଣୀ ।1

ଲେଖିଲା ସସ୍ସାର ବାଳା-ମନ-ବିଷାଦନ -

ଶୋଇଯା ଶୋଇଯା ବାଳୀ ମୋ ଗଣ୍ଠିରତନ ।

ମାନବ ଜୀବନ ନୁହେଁ ପ୍ରସୂନିକା ତଳ୍ପ,

ଦୁଃଖ ମଧ୍ୟେ ମିଳେ ସୁଖ କେବେ ଅଳ୍ପ ଅଳ୍ପ ।2

ଆଦିକାଳୁ ନରନେତ୍ରୁ ଝରିଛି ଯେ ଜଳ,

ସପ୍ତ ମହାସିନ୍ଧୁ ତାର ବିନ୍ଦୁଏ କେବଳ ।

ଆମ ଭାଗ୍ୟେ ଅଛି ତହୁଁ କ୍ଷୀଣାଂଶ ମାତର,

ସହି ନେବା ଚାଲ ନିର୍ବିବାଦ ଅକାତର । 3

ସଂଗୀତ ରଚନେ, କିଏ ହଜି ଚିତ୍ରାଙ୍କନେ,

ଭୁଲି ଯିବା ଶୋକ ଯାହା ରହିଛି ଜୀବନେ ।

ଏହି ଭାବେ ବିତି ଯାଉ ଏ କ୍ଷୁଦ୍ର ଜୀବନ,

ଆର ପାରେ ହେଇ ପାରେ ଅପୂର୍ବ ମିଳନ । 4

ଅଥବା ମିଳନ ହେଉ ଅପର ଜନମେ,

ଲାଗି ଯିବା ବିଷାଦର ବିସ୍ମୃତି ଧରମେ ।

ପ୍ରଳୟରୁ ପୁଣି ଆନ ପ୍ରଳୟ ପର୍ଯ୍ୟନ୍ତ

ଏଭାବେ ଧରଣୀବକ୍ଷ ସଦା ପ୍ରାଣବନ୍ତ । 5

ନ ଥାଉ ବହଳ ରସ, ବିଚକ୍ଷଣ ରୀତି,
ଥରେ ଅଧେ ପାରିବ ତ ଲେଖି ଦିଅ ଗୀତି ।
ଖେଳୁ ନବ ଉନ୍ମାଦନା ସଂଗୀତ ଲହରେ,
ନୃତ୍ୟରତ ମନେ ଗ୍ରାମ-ନଗର-ସହରେ । 6

ସସ୍ମାର= କବି, କଳାକାର;

ଲଲାଟେନ୍ଦୁ କବି 202205290147

## ସୁଖ ପାଶେ ଦୁଃଖ -066

ନିୟୁତ ମିଳିବେ ନିରତ ବୋଲିବେ --
ପ୍ରୀତି-ସ୍ମୃତି ସୁଧା ଦିଏ;
କାହାର ସେ ଦିନ ଜହରଠୁ ହୀନ
ଅଲୋଡା ସପନଟିଏ ||୧||

କିଏ ହଜି ଯାଏ କିଏ ଖୋଜୁ ଥାଏ
କିଏ ଭଜୁ ଥାଏ ବସି;
କିଏ ଯେବେ ଶୁଣେ ଛାତି ପରେ ମଣେ
ଅତଡା ପଡିଲା ଧସି ||୨||

ମଧୁଲେହ ତୁଲେ କିଏ ଫୁଲେ ଫୁଲେ
ବୁଲେ ଦେଖି ନିଶାପତି;
ଝରିଲେ କୌମୁଦୀ କିଏ ନେତ୍ର ମୁଦି
ବିଷାଦୀ ମଉନ-ବ୍ରତୀ ||୩||

କାଶ ବଗିଚାରେ ଘାସ ଗାଲିଚାରେ
କିଏ ସାଥୀ-ଅଭିସାରେ;
କିଏ ଶସ୍ୟଭୂମି କ୍ଳେଦ, ସ୍ୱେଦ ଚୁମି
ଜମି ଚଷେ ବରଷାରେ ||୪||

ସୁଖ ସିନ୍ଧୁ ସୁରା　　　ସୈକତେ ବିଧୁରା
　　ଆତୁରା  ଅକ୍ଷରା ବୀଚି;
ଆହେ ଓଷଧୀଶ　　　ବିନାଶି ସେ ବିଷ
　　ସୁଧା ରାଶି ଦିଅ ସିଞ୍ଚି ?୫||

ନିଶାପତି= ଜହ୍ନ; କୌମୁଦୀ= ଜହ୍ନ ଆଲୁଅ;

ଲଲାଟେନ୍ଦୁ କବି ୨୦୧୭୧୧୧୪୧୭୦୩

## ନୟନତାରା ଦେଖେ ତିମିର ଅନ୍ଧକାରେ -067

ଦେଖିଲି ସପନରେ　　　ନୟନତାରାଟିକି ।
ପାତଳ ସେହି ତନୁ　　　ତଳିପା ଟିକିଟିକି ।୧
ସେ ଦିନ ପରି ତାର　　　ଅଫୁଟ ମୁଖଶିରୀ
ନୀରବ ହସ ଝରେ　　　ଅଧରେ କିରିକିରି ।୨

ଚପଳ ହାତଧୃତି　　　ସଜଳ ଆଖିପତା
ଉଚ୍ଛଳ ପ୍ରୀତି ହୃଦ-　　　କୁହରେ କହେ କଥା ।୩

ମଉନେ କହି କଥା　　　ମରମ ଜାଳେ ପୋଡେ
ତା ଆସ୍ୟତାମରସେ　　　ଦୃଶାଶ୍ରୀବାସ ଯୋଡେ ।୪

ଆଶ୍ଲେଷଟିଏ ଆଶେ　　　ଗଲେ ମୁଁ ଆଗେ ଆଗେ
ତୁରିତେ ଅପସରି　　　ପରିଧି ପାରେ ଲାଗେ ।୫

ରହି ସେ ବହୁ ଦୂରେ　　　ଧରା-ଅମ୍ବର ଧାରେ
ବିଭାଷା ଭାଷା ଭାଷେ　　　ଦିଶା-ବିଦିଶା ପାରେ ।୬

ଦଶନ ଦିଶି ଯାଏ　　　ତମସେ ଝିକିମିକି;
ସେ କହେ,ଏବେଯାଏ　　　ବୟସ ହେଇନି କି ?୭

ମିଠା କବିତା

ଏବେ ତ ଯାଅ ଭୁଲି ଭାଲେ ଯା' ନାହିଁ ଲେଖା,
ସପନେ କେତେ ଦିନ ବିଭ୍ରମି ଦେବି ଦେଖା ?-୮

ନିରେଖି ଦେଖ ନିଜ ଆନନ ଦରପଣେ,
ନାହିଁ ସେ ଯଉବନ ଜରିତ କର୍ଣ୍ଣଫଣେ ।୯

ବୟସ ଭାରେ ଏବେ ବିବଶ ଅବୟବ
ବଦନେ ଅଲଭ୍ୟ ସେ ଲୋଭନଝରା ସବ |୧୦

କର୍ପର ପାଶେ ଚଳେଁ ସମ୍ଭାଳି ଦେହ ଭାରା;
ବିଭ୍ରମ ମରି ରାମ ତିମିର ଘର ସାରା ।୧୧

ଲଲାଟେନ୍ଦୁକବି ୨୦୧୭୦୭୨୯-୧୬୧୨

ଧୂତି= ଚାଳନ, କମ୍ପନ, ବିକ୍ଷେପ; କୁହର= ଗୁହା,ରନ୍ଧ୍ର, କୋଟର; ଆସ୍ୟ= ମୁହଁ; ତାମରସ= ପଦ୍ମ;ଦୃଶାଶ୍ରୀବାସ= ନେତ୍ରପଦ୍ମ; ଆଶ୍ଳେଶ= ଆଲିଙ୍ଗନ; ପରିଧି=ଦିଗ୍‌ବଳୟ, ଚକ୍ରବାଳ;ବିଭାଷା= ମହାଭାଷ୍ୟ; ଦିଶାବିଦିଶା= ଦିଗ୍‌ବିଦିଗ; କର୍ଣ୍ଣଫଣ= କାନ ଓନାକ; ସବ=ଆବେଗ; କର୍ପର= ଦର୍ପଣ; ରାମ= ଘନ, ଘଞ୍ଚ;,

## ମୋ ପ୍ରେମକବିତା - ୨ -068

ଲେଖି ପ୍ରେମଗାଥା ପୂରିଗଲା ଖାତା,
ବ୍ୟଥାକ୍ରାନ୍ତା ନିଶୀଥିନୀ;
ନାହିଁ କେ ବନିତା ମୋ ମନ ମାନିତା,
ଚିତ୍ତାଶ୍ରିତା ବିମୋହିନୀ | ୧

କାହିଁ ସଦ୍ୟସ୍ନାତା ସ୍ୱଭାବେ ସମ୍ଭ୍ରାନ୍ତା
ସ୍ମିତିସିକ୍ତା ସୀମନ୍ତିନୀ,
ମୋ ପ୍ରେମପ୍ରସକ୍ତା ଉଦ୍ଭାଥାପ୍ରମତ୍ତା
ପ୍ରୀତିପ୍ଲୁତା ପ୍ରମୋଦିନୀ | ୨

ମିଠା କବିତା

ଦୃଗ୍ଜଳ ମୋହର ଲୋଚନୁ ଏଥର
ଝରି ଚାଲ ଏହି ପରି,
ମୋ ଗୀତି ଛନ୍ଦରେ ତା ପ୍ରୀତି ଗନ୍ଧରେ
ଭୂମଣ୍ଡଳ ଯାଉ ଭରି | ୩

ରଆକାଶେ ବତାସେ ସଦା ହା ହୁତାସେ
ଜଳି ଯାଉ ମର୍ମସ୍ଥଳ;
କାଲି କେ ପ୍ରଲୁବ୍ଧ ନ କହୁ ଏ କ୍ଷୁବ୍ଧ
ହୃଦ ଥିଲା ସୁକୋମଳ | ୪

ଆଉ ଭଙ୍ଗା ଗଢା କର୍ଦ୍ଦମ ଫୋପଡା
ଲୋଡା ନାହିଁ ଲୋଡା ନାହିଁ:
ନିୟମ ଖସଡା ଅତଡା ସଜଡା
ଜୋଡା ନାହିଁ ଘୋଡା ନାହିଁ | ୫

ଆସି କେ ସଜ୍ଜନ ଦେବ ଆଶ୍ୱାସନ
ନାହିଁ ପ୍ରୟୋଜନ ମୋର;
ବିନା ଆଡମ୍ବରେ ଯିବି ଅନମ୍ବରେ,
ରହି ଯିବ ହସ୍ତାକ୍ଷର | ୬

ଲଲାଟେନ୍ଦୁ କବି ୨୦୧୯୦୩୦୮୦୪୦

## ଏଇ ତ ଜୀବନ -069

ଏଇ ତ ଜୀବନ ଏଇ ସମାପନ,
ସପନର ଆବପନ
କିଛି ଉଚ୍ଛ୍ୱସନ କିଛି ନିର୍ଯାତନ
ନାନାବିଧ ସମ୍ମୋହନ |୧
ଆବପନ= ବୁଣିବା;

ମିଠା କବିତା

କିଛି ଲେଖିଥିବ କିଛି ବାକି ଥିବ
କିଛି ଖାତା ଥିବ ଖାଲି,
କା ଜୀବନ କେବେ ଭାଗ୍ୟର ପ୍ରଭାବେ
ଅନାରମ୍ଭେ ଯିବ ଚାଲି ।୨

କେତେ କିଏ ଆସି ହେଲେଣି ପ୍ରବାସୀ
କିଛି ରଖି କିଛି ଲେଖି
କିଛି ବିଦ୍ୟମାନ କିଛି ଅନୁମାନ
ଆଜୀବନ ଦେଖି ଦେଖି ।୩

ଥିଲେ ମୋ ପୂରୁବେ ସସ୍ୱାର ସରବେ
ମୋ ପରେ ଆସିବେ ପୁଣି,
ଲେଖା ଭଲ ନାହିଁ ଗାଳି ଦେବ ଭାଇ
ମୋ କବିତା ଶୁଣି ଶୁଣି ।୪
ସସ୍ୱାର= କବି, ଚିତ୍ରକର_

ଯେତେ ନିନ୍ଦା ଗାଳି କରି ଗଳାମାଳି
ମୋ ପଥ ସଙ୍ଖାଳି କରି,
ଖୋଜୁ ଥିବ ତୁମେ ଯିବି ଆନ ଭୂମେ
ନୀରବରେ ଅପସରି ।୫

ଲଳାଟେନ୍ଦୁ କବି ୨୦୧୯୦୧୩୦୦୮୫୫

## ଧରା ଦେବି -070

ଜାଣେ ମୁଁ ପୀରତି ନିଦାରୁଣ ଅତି
ସଭିଏଁ କାନ୍ଦନ୍ତି କେହି ବାକି ନାହିଁ ।

ମିଠା କବିତା

ହେଲେ ତୁମ ସରି     ମୋର ନାମ ଧରି
କେହି ତ ଏ ପରି     କେବେ ଡାକି ନାହିଁ ॥   ୧ ॥

ପୀରତି ନିଶାରେ     ନିୟତି ଇସାରେ
ତାମସୀ ଦିଶାରେ     ଅସୁମାରୀ ଖାଲ ।
ସବୁ ଜାଣି ଶୁଣି     ମୁଁ ପ୍ରେମ-ରଙ୍କୁଣୀ
ମିଠା ଲାଗେ ପୁଣି     ତବ ପ୍ରେମ-ଜାଲ ॥   ୨ ॥

ପ୍ରିୟ ପାଶ ପାଇଁ     ଯିଏ ଧାଇଁ ଧାଇଁ
ଥକି ଯାଏ ନାହିଁ     ମୁଁ ସେହି ନିର୍ଝରୀ ।
ସରାଗ-ଜର୍ଜରା     ମିଳନ-କାତରା
ନ ଦେଇ ମୁଁ ଧରା     ରହିବି କି ପରି ॥   ୩ ॥

ଲଳାଟେନ୍ଦୁ କବି     ୨୦୨୧୦୮୧୮୨୩୫୫

**ଉପଚାର**     -071

====

ତୁମ୍ଭ ନେତ୍ରପାରେ
ଉଷ୍ଣ ଚୁମ୍ବସାରେ
ଅଶ୍ରୁଦକ ଧାରେ
    ଦେବ କି ନ ଦେବ?
ନ ଆସ ଏ ଘରେ,
କେବେ ଥରେ ଥରେ
ଆରଣ୍ୟପଥରେ
    ଦର୍ଶନ ତ ହେବ !୧

ଏଣେ ଛିନ୍ନବିତ୍ତ
ତେଣେ ଖିନ୍ନଚିତ୍ତ
କି କରିବି ମିତ
 କାହା ଉପଚାର?
ତୁମ୍ଭ ଅଶ୍ରୁପାନ
ହୃଦ ଅନୁଦାନ -
ଏହି ମୋ ନିଦାନ,
 ନାହିଁ ମିଥ୍ୟାଚାର ।୨
୨୦୧୮୧୦୦୩୨୨୦୫

ଏବେ ବି ସ୍ୱପନେ
ସେ ରମ୍ୟ ଲପନେ
କରେ ମୁଁ ଗୋପନେ
 ନିତ୍ୟ ଦରଶନ,
ମେଦୁର କମ୍ପିତ
ବାମ୍ବଳ ବାଦିତ
ଶୁଣେ ସେ ଉଦ୍ଗୀତ
 ସ୍ନିଗ୍ଧ ସମ୍ମୋହନ ।୩
ଲପନ= ମୁହଁ; ମେଦୁର=
କୋମଳ; ବାମ୍ବଳ=ଓଠ;

ବିଷଣ୍ଣ ନିଶାରେ
ବିବର୍ଣ୍ଣ ଦିଶାରେ
ବିଷମ ଧକ୍କାରେ
 ଭାଗ୍ୟ ବିଡମ୍ବନ,
ପ୍ରତି ଦିନକ୍ଷୟ
ଅତି ବିଷମୟ
ଲାଗେ ବିପର୍ଯ୍ୟୟ
 ସଦା ପ୍ରତ୍ୟାସନ୍ନ ! ୪

ଦିନକ୍ଷୟ= ସନ୍ଧ୍ୟା;

ଅସୁମାରୀ ଆଶା
ଅଦମ୍ୟ ପିପାସା
ଅସୀମ ଜିଜ୍ଞାସା
    ଅପସରି ଯାଏ,
ପଦ୍ମସରୋବରେ
ଛଦ୍ମ ଆଡମ୍ବରେ
ସଦ୍ମ ନୀରବରେ
    ମରି ସରି ଥାଏ ।୫

ସଦ୍ମ= ଜଳ;

ଲଳାଟେନ୍ଦୁ କବି        ୨୦୧୯୦୮୨୯୦୩୨୨

## ହତାଶାର ବିନାଶୀ ନିଶାରେ                    -072

ଶୀତ ଉଷ ଉହ୍ଲେଇଁ ନିଆଁରେ
ଉଲ୍ଲଳ ହେମାଳ ମିତ ବତାସରେ ଆନ୍ଦୋଳିତ
ମୁକୁରିତ କଟମ୍ବରା କୁଟୁମ୍ବ ମାୟାରେ,
କଟମ୍ବରା କୁଟୁମ୍ବ ମାୟାରେ ||          1

ତଟିନୀର କୃଶକଟୀ ଧାରେ
କୂଜନେ ଖଗମ ଗାଏ ବିଷାଦ ଉଦ୍ଗୀତ
ବିବିକ୍ତ ପ୍ରବିକ୍ତ ଚିତ୍ତେ ବିଜନେ ଗୁଞ୍ଜିତ
ମର୍ମଗାଥା ମର୍ମାତୁରେ ମର୍ମର ସମୀରେ;
ହତାଶାର ବିନାଶୀ ନିଶାରେ ||          2

## ମିଠା କବିତା

କଳ୍ପନାରେ ଦେଖେ ଥରେ ଥରେ:
ଅନ୍ତହୀନ ଅସ୍ତିତ୍ୱର ଉତ୍ତାଳ ଲହରେ
ପରାର୍ଦ୍ଧ ବତ୍ସର ଉଷ୍ଣି ବୈଶ୍ୱାନର ତାପେ
ବିଦଗ୍ଧ କୂଟସ୍ଥ ମନ୍ଦ କ୍ରନ୍ଦନେ ବିଳପେ
ବିମୁକ୍ତିର ଈଷତ ଆଶାରେ || 3

ଅଦର୍ଶନେ ଭବିଷ୍ୟ ସଞ୍ଚିତ,
ବ୍ୟସ୍ତ ମନ ତେଜି ଲୁବ୍ଧ କାମ ବିମୋହନ
ଆସ୍ୱାଦ ଆମ୍ ଅମୃତେ ମଣ୍ଡନ ସାଧନ
ଶ୍ୱସ୍ତନ ବିଭାତ ଅବିଦିତ ସୁରାସୁରେ,
ଇନ୍ଦୁ ବିନ୍ଦୁ ମିଶୁ ସିନ୍ଧୁ ନୀରେ || 4

ଲଲାଟେନ୍ଦୁ କବି ୨୦୧୬୧୧୨୭-୨୨୪୫

**କଟମ୍ବରା= a kind of rose; କୃଶକଟୀ= because of less water in winter; ଖଗମ= bird; ଉଦ୍ଗୀତ= song; ବିବିକ୍ତ= separate (from original home); ପ୍ରବିକ୍ତ= shivering, quaking; ଉଷ୍ଣି= burning; ବୈଶ୍ୱାନର= fire; କୂଟସ୍ଥ= soul; ଶ୍ୱସ୍ତନ= tomorrow's; ବିଭାତ= morning; ଇନ୍ଦୁ= sparkle (the Soul); ସିନ୍ଧୁ= indicative of cosmic Existence;**

## ପ୍ରଶ୍ଚିତିର ପରପାରେ -073

ଉଆଁସ ନିଶୀଥ ବାସି
ଉଷସୀର ଅଂଶୁ ନାଶି
ଅଳସ ବାସର ଶେଷେ
ଅବଶ ତାମସ ନିଶି ||

ଆତୁରା ଉର୍ବରା ଧରା
ଧୂମିତ ମରୁତ ତ୍ୱରା
ସରିତ ପ୍ରସ୍ରବ ଧାରା
ପଲ୍ଲବ ପ୍ରସୂନ ରାଶି ||-୧

ଜନନୀ ଜଠରେ ଜଳେ,
ଶୈଶବେ ଶ୍ଲେଷ୍ମଣ କାଳେ,
କୈଶୋରେ କର୍ଦ୍ଦମ କୋଳେ,
ଯୌବନେ ଜାୟା ଜଞ୍ଜାଳେ;

ବୟସ ଆସନ୍ତେ ଖସି
ବିଷାଦ ବିରସେ ବସି
କାଳକୂଟ କଳେ ପୁଂସ:
ଶୁଷ୍କ-ସମ୍ପଦ-ସରସୀ |-୨

ଏ ରୂପେ ପ୍ରସ୍ଥିତି ପାର
ରମେ ଦୀନ ହୀନ ନର
ବୃଥା ଶିରେ  ମାରେ କର
ପରିତଃ ବିଦ୍ୱେଷ ଦର୍ଶୀ ||୩

ଲଲାଟେନ୍ଦୁ କବି ୨୦୧୬୧୧୨୮-୧୨୨

## ଧୂଆଁ ଧୂଆଁ ମେଘୁଆ ଆକାଶେ -074

(ପାଠକଙ୍କୁ)

ମନେ ପଡ଼େ ମୋ ପ୍ରାଣ ପ୍ରତିମା
ପ୍ରତି କ୍ଷଣେ ମୋତେ ଚାହିଁ ରହେ;
ଭୀତି ଭରା ପ୍ରୀତି ପ୍ରସ୍ତାବନା
ଭୀରୁ ଭୁଲତାରେ କଥା କହେ || -୧

ଖୋଜି ତାକୁ ନିଶୀଥ ଦିବସ
ସଞ୍ଜେ ପୁଣି ମନ ଖୋଜୁ ଥାଏ;
ଖୋଜି ଖୋଜି ଯାଏ ଯେତେ ପାଶ
ସେତିକି ସେ ହଜି ହଜି ଯାଏ || -୨

ମିଠା କବିତା

ସେହି ଦିନୁ ଚାଲିଛି ଏ ଖୋଜା,
ଆଶା ମିଶା ଖୋଜା ଆଜି ଯାଏ;
ପ୍ରତେ, ବାଜେ ପ୍ରତ୍ୟାଶାର ବାଜା,
ମିଳି ନାହିଁ ମିଳି ଯିବ ସିଏ || -୩

ଖୋଜା ଖୋଜି ଉପରତି ବିନା,
ଚାଲିଛି ଏ ଖୋଜା ବଢ଼ି ବଢ଼ି;
ସାପ ଖାଏ; ପଡ଼େ ପୁଣି ଦାନା;
ବେଳେ ବେଳେ ଶିଡ଼ି ଯାଏ ଚଢ଼ି ||-୪

ଦିନେ ଦିନେ ଚାହିଁ ଫାଙ୍କା ଫାଙ୍କା
ଆଖି ପତା ଭିଜି ଭିଜି ଆସେ;
ମେଘୁଆ ମେଘୁଆ ଫିକା ଫିକା
ଧୂଆଁଳିଆ ସେ ଦିଶେ ଆକାଶେ || -୫

କହି ଯାଏ ଇସାରା ଇସାରା,
"ରହିଛି ମୁଁ ତୁମ ପଥ ଚାହିଁ;
ଦିଅ ତୁମ ହସ, ମୋ ପସରା;"
ହସି ଦୁହେଁ କାନ୍ଦୁ କହିଁ କହିଁ || -୬
ଲଲାଟେନ୍ଦୁ କବି ୨୦୧୬୧୧୦୧-୨୦୧୨

ମୋ ପ୍ରେୟସୀକୁ [ସେ ଶୁଣୁ ବା ନ ଶୁଣୁ]

ମନେ ଅଛି ଆଗୋ ପ୍ରିୟତମା !
ଆଖିଭରି ଚାହିଁଥିଲୁ ଦୁହେଁ,
ଭାଷା ଥିଲା ଆଖିର ଭଙ୍ଗିମା
ଆସି ନାହିଁ କେବେ ଓଠ ଯାଏ ||୭||

ଦେଖିଥିଲି ଭିଜା ଆଖି ପତା,
ଭାଷା ଭରା ଅଧର କମ୍ପନ;
ଶୁଭୁଛି ସେ ଅକୁହା ବାରତା;
ବଢ଼ି ଚାଲେ ହୃଦୟ ସ୍ପନ୍ଦନ ||୮||

**ମିଠା କବିତା**

ଲଲାଟେନ୍ଦୁ କବି    ୨୦୧୭୦୭୧୭-୧୧୨୭

*ଅଧୁନା କଦାଚିଚ୍ଚର୍ଚ୍ଚିତ କେନ୍ଦ୍ରାଗୀତଟିଏ:*

**କାନ୍ଦନା - କନ୍ଦାନା**    -075

==========

ତାର -  ପୂରିବାରେ ବେଳ .......

ସାରି -  ବାଲିଧୂଳି ଖେଳ

ସେ ତ - ଆରପୁରେ ଚଳିଲା ଲଳନା; {୨}

ଚାଲି -  ଯାଇଛି ସେ ଯହିଁ

କେହି - ସେଠୁ ଫେରି ନାହିଁ

ହତ -   ଭାଗିନୀରେ କାନ୍ଦ ନା କାନ୍ଦ ନା; {୨}

----

ଏ ବିଧାନ ପୁରୁଣା ...

ପଛେ ଛାଡ଼ି ମିଛ ମାୟା

ରଖି ଦେଇ ସ୍ମୃତି ଛାୟା

        ହଜି ଯିବେ ଜଣେ ଜଣେ

        ନ ପଡ଼ିବ ଛାୟା;

ଦଣ୍ଡେ  ନ ରହି ସଂସାର

ଚାଲି  ଥିବ ପଥେ ତାର

ଆଖି ଖୋଲି ଅନା |

ହତ -   ଭାଗିନୀରେ କାନ୍ଦ ନା କାନ୍ଦ ନା;  {୨}  |

----------X-------- ||୧||

ଫୁଲି -  ମୁଖ ନାକ ଆଖି
ଗଳା -  ତୋ ଗଲାଣି ଶୁଖି
ହେଲେ - ଘେନିବ କେ ଆନ ତୋ ଯାତନା; {୨}
ଖସି -  ଗଲାଣି ମେଖଳା
କେଶ - ପଡ଼ିଛି ମୁକୁଳା
ତୋତେ - ଦିନ ରାତି ପଡୁନି କି ଜଣା ? {୨}

----

ଏବେ - ଶୋଇ ଯା ବାମା....
ଦେଖ ଏ ଘନ ଅନ୍ଧାରେ
କଳା ମେଘେ ଅନମ୍ବରେ
        ବିଜୁଳି ଛନକା ମାରେ,
        ଛାତି ଥରଥରେ;
ପାଖେ ଅଛି କହ କିଏ
ଆପଣା ଘରେ ସଭିଏଁ
କଲେଣି ବିଛଣା |
ହତ -  ଭାଗିନୀରେ ନିରତ କାନ୍ଦ ନା,
ଆରେ - ଅଭାଗିନୀ, ତୁଚ୍ଛାକୁ କାନ୍ଦ ନା |

--------X--------    ||୨||

ବେନି - ଅପତ୍ୟ ତୋହର
ସେ ତ - ବାଳୁତ କୁମର
ତନ୍ଦ୍ରା -  ତୁରେ ଅନାହାରେ ଗଲେ ଶୋଇ {୨}
ଦେଖି - ତୋ' ଆଖିର ଜଳ
ଦୁହେଁ - ଡହଳ  ବିକଳ,
ଏକ -  ଆନ ପରେ ହାତେ ହାତ ଥୋଇ; {୨}

----

**ମିଠା କବିତା**

ଏବେ - ଭାଙ୍ଗି ପଡ଼ନା

ଆତୁରେ କଲେ ତୁ ରୋଳ

ଆସି ଜନ ମାଳ ମାଳ

ପାଶେ ବସି ତୋ ଆଖିରୁ

ପୋଛି ଦେବେ ଜଳ;

ଚାଖିବାକୁ ରୂପ ଶିରୀ

ରହିବେ ତୋ ହାତ ଧରି

ଶୁଣ ସୁନୟନା |

ତାଙ୍କ - ଭରସାରେ ଜମା ତୁ କାନ୍ଦନା |

ପର - ପୁରୁଷକୁ ଭରସା କରନା;

ପଶୁ - ମଣିଷକୁ କଷଣ କହନା |

--------X--------    ||୩||

ଶୁଣି - ଅଳି କରେ ବାଳୀ --

କହେ - କେନ୍ଦରା ବଜାଳୀ,

ଆଉ - କରନା ତୁ ମୋତେ ଆନମନା; {୨}

ବୁଲି - ବୁଲି ଗଳି ଗଳି

ପାତି - ଦେଇ ଭିକ୍ଷାଥାଳୀ

ଆନ - ଅପତିକି ଏ ଗୀତି ଶୁଣାନା; {୨}

----

ଗୀତ ଗାଇ କନ୍ଦାନା....

ରେ ନିଠୁର କଳାକାର

ଭରି ଦେବି ଥଳୀ ତୋର

ଫେରି ଯାଅ ନିଜ ଘର

ବଜାନା କାନ୍ଦଣା;

କିଆଁ ଗାଇ, ମନ ମୋହି,

କେନ୍ଦରାରେ ସୁର ଦେଇ

ବଢ଼ାଉ ବେଦନା |

## ମିଠା କବିତା

ଆଜି – ଥାଉ, ମୋତେ ଆଉ ତୁ ଶୁଣା ନା;
ମୋତେ - କରନା ଅଧିକ ଆନମନା;
କୋହ - ଦାହରେ ତୁ ଜାଳି ପୋଡି ଦେ ନା;
ଭିକ୍ଷା - ଥଳୀ ଦେଖା ନ କରି ବାହାନା |

--------X--------        ||୪||

ଲଲାଟେନ୍ଦୁ କବି ୦୫ ଜୁନ ୨୦୧୬

## ଯାତ୍ରୀର ରାତ୍ରି                    -076

=======

ଯାତ୍ରୀ ! ଅଚିରେ ରାତ୍ରି ଆସୁଛି ନଇଁ,
ପୁଷ୍କରନୀରେ ତନ୍ଦ୍ରା ଭାଜିବ କଇଁ
ଏବେ - ଲାଗୁଥିବ ଥକା ଥକା!
ପାନ୍ଥଶାଳାରେ ରହି ଯା ରାତ୍ରେ
    ନମିଳିବେ କେହି ସଖା ।୧
  ପୁଷ୍କର= ହ୍ରଦ, ପୋଖରୀ

ଧାତ୍ରୀ କହୁଛି ଯାତ୍ରୀ ଯାଅନା ଥକି,
ନେତ୍ର ମୁଜିଲେ ନିଶ୍ଚେ ତୁ ଯିବୁ ଠକି,
ଆଗେ - ପାନ୍ଥନିବାସ ନେଇ,
ରଖିଦବୁ ଭାରା ପେଟିକା ପସରା
    ଦ୍ଵାର ଅର୍ଗଳ ଦେଇ ।୨
ଧାତ୍ରୀ= ପୃଥିବୀ;

ପ୍ରତ୍ୟୁଷ କାଳେ ଦେଖୁବୁ ଚକ୍ରବାଳେ
ଲକ୍ଷ୍ୟ ତୋହର ଦିଶାର ଅନ୍ତରାଳେ
ତୋର - ପେଟିକା ତୌଲ୍ୟ ଧରି,
ମୌନ ଆଚରି ଯିବୁ ନିଃସରି
ସରୁ ସରୁ ଶର୍ବରୀ ।୩
ତୌଲ୍ୟ= ଓଜନ;

ଶୂନ୍ୟଗୀତିକା ଶୁଣୁଥିବୁ କାନ ପାତି,
କ୍ଷୁଣ୍ଣ ବୀଥିକା ଧୀରେ ଧୀରେ ଯିବ ତାତି
ଯିବୁ - ତୁରିତେ ଅଗ୍ରସରି,
ଦୀର୍ଘ ସେ ପଥେ ବିନା ଇଙ୍ଗିତେ
ସଂଗୀତ ଯିବ ସରି । ୪
ଇଙ୍ଗିତେ= ସୂଚନା;

ଅସରା ଯାତ୍ରା ବନ୍ଧୁର ଗିରିପଥ
ସାଧନ ମାତ୍ରା ଆଗରୁ ଅପ୍ରଭୂତ
ଗିରି - କନ୍ଦର ଆଡୁଆଳେ
ତପ୍ତ ବତାସ ସତ୍ତ୍ର ହତାଶ
ମାୟାର ଇନ୍ଦ୍ରଜାଲେ । ୫

ସାଧନ= ଆବଶ୍ୟକ ବସ୍ତୁ, କଳାକୌଶଳାଦି; ସତ୍ତ୍ର= ବଣ;
ଲଳାଟେନ୍ଦୁ କବି 2019-12-12

## ବର୍ଷାରାତି -077

=====
ଏଇ ସେ ବର୍ଷା ବାରି –
ଦେଖି ମନେ ପଡେ
ଏଇ ବର୍ଷାରେ
ଫେରି ମୁଁ ଆସିଲି ତୁମେ ଗଲ ଦୂରେ,

ସେ ବନ ଉହାଡେ
ଅଧୁରା ମିଳନ ଛାଡି;

ଘନ କର୍ବୁରେ ସ୍ୱାନ୍ତ କୁହରେ
ତପ୍ତ ଲୁହରେ ଦୃପ୍ତ ଶିହରେ
ସ୍ୱନ୍ଦନ ଯେବେ କମ୍ପ୍ର ସମୀରେ
ଚାଲିଥିଲା ବଢି ବଢି ||-୧
......
ଆଜି ଏ ବର୍ଷା ରାତି --
ମାଡି ଆସେ ଭୀତି;
ଦେଖି ବନ ବୀଥୀ ଦୁର୍ଗତ ଅତି,
ଫୁଲ୍ଲ ସରିତ ଦୁର୍ଦମ ଗତି;
ମନେ ପଡେ ସେଇ ହଜିଲା ସ୍ୱପ୍ନ
ପ୍ରୀତି-ସିଞ୍ଚିତ ଶୈଳ କାନନ;

ତଳେ ଝଡି ପଡି ଆଶା ଯାଏ ସଢି,
ବର୍ଷା ସାଥୀରେ ନେତ୍ରୁ ମୋ ଝରେ
ତପ୍ତ ଲୋତକ ବାରି,
ଏବେ ଦେଖି ଏ ବର୍ଷା ଝଡି ||-୨
.....
ଲଲାଟେନ୍ଦୁକବି ୨୦୧୭୦୮୨୮୨୨୩୨

## ତୋଳି ଦିଅ ସ୍ୱପ୍ନ ନଗରୀ -078

------------------------
ଏ ମୋର
 ଦ୍ୱାର ସେପାରେ
ତିମିର
 ଅନ୍ଧ କ୍ଷପାରେ
ଶୁଭୁଛି
 ସୂକ୍ତ ତୁମରି;

ତନ୍ଦ୍ରା

ଯାଏ ମୋ ଭାଜି

ଶ୍ୱସନ

ଦଂଶନ ସାଜି

ଜଳାଏ

ମୋ ବିଭାବରୀ ||

ଆସ ଆସ

ସନ୍ନିଧେ ବସ

ତୋଳି ଦିଅ

ସ୍ୱପ୍ନ ନଗରୀ;

ପ୍ରୀତି ଧାରେ

ସଙ୍ଗୀତ-ସାରେ

ଭରି ଦିଅ

ରିକ୍ତ ଗଗରି ||-୧||

ଳ

ପ୍ରଭାତେ

ମନ୍ଥର ବାତେ

ଅଳସ

ପୟର ପାତେ

ଭ୍ରମିବା

ସିନ୍ଧୁ ସେପାରି;

ଦେଖିବା

ଦଣ୍ଡେନ୍ଦ୍ର-ଧନୁ,

ଅଧୀରା

କର୍ବୁର-ତନୁ,

ମେଦୁର

ଅମ୍ବୁଦ-ବାରି ||

## ମିଠା କବିତା

ଆସ ମିତ
 ମୋ ସହିତ
ବନ ଗିରି
 ଶୃଙ୍ଗ ଶିଖରୀ;
ନୀପ ଫୁଲେ
 ମଞ୍ଜରୀ ମାଳେ
ସାଜି ଦେବି
 କୃଷ୍ଣ କବରୀ ||-୨||

ଦିବସ
 ପର୍ଯ୍ୟବଶେଷେ
ମୁଦି ତା'
 ମୁଗ୍ଧ ପଳାଶେ
ପ୍ରସୂତ
 ପଡିବ ଝରି;
ଆଟୋପ
 ଉସ୍ଥାଦ ଗତେ
ତପନ
 ଆଗ୍ନେୟ ରଥେ
ଚଳିବ
 ମୃତ୍ୟୁ ଆଦରି ||
ମୋ ଜୀବନ
 ଉସ୍ଥୁର ହେଲେ
ଯିବି ମୁଁ ଏ
 ଜନ୍ମ ସେପାରି;
ଆଶ୍ଳେଷିବ
 ନିଷ୍ପ୍ରମ ବେଳେ,
ନ କାନ୍ଦିବ
 ବକ୍ଷ ବିଦାରି ||-୩||

===============

କ୍ଷପା= ରାତି; ସୂକ୍ତ= ମିଠାକଥା; ଶ୍ୱସନ= ଶ୍ୱାସ; ସିନ୍ଧୁ= ନଦୀ; ଦଭେୟ= ଇନ୍ଦ୍ର; ଅଧୀରା= ବିଜୁଳି; କର୍ବୁର= ସୁନା; ନୀପ= କଦମ୍ବ; ପଳାଶ= ପାଖୁଡା; ପ୍ରସୂତ= ଫୁଲ; ଆଟୋପ= ଗର୍ବ; ଉତ୍ସାଦ= ଲୋପ; ଉତ୍ସୁର= ସମାପ୍ତି; ଆଶ୍ଳେଷ= ଆଲିଙ୍ଗନ

============

ଲଳାଟେନ୍ଦୁ କବି    ୨୦୧୭୧୦୧୧୦୧୨୪

## ରାତ୍ରି-ବାସର ସନ୍ଧିରେ    -079

ଖର ସ୍ୱନ୍ଦିତ ହୃଦ-କନ୍ଦରେ
ବୁସ- ବ୍ୟୁତ୍ତ ଉର୍ବରା ଗନ୍ଧରେ
ହାତେ ତୋଳା ଟିକି ସ୍ମୃତି-ମନ୍ଦିର,
ପ୍ରୀତି- ବନ୍ଧନେ ବାଣୀ-ବନ୍ଦୀର ॥  ୧ ॥

ଭରି ହୃଦୟ ସିକ୍ତ କନ୍ଦିରେ
ଏଇ ରାତ୍ରି-ବାସର ସନ୍ଧିରେ,
ବିତୁ ପ୍ରଧାନ ଭାରେ ଅନ୍ଧିକା
ଶତ ସମ୍ଭାବନାରେ ଛନ୍ଦିକା ॥  ୨ ॥

ଯେବେ  ଶ୍ରାନ୍ତ ଦ୍ୱିଭାତ ସଞ୍ଜନେ
ଥିବ ମୃଦ୍ୱଟ ମୃଦୁ ଗୁଞ୍ଜନେ;
ହୃଦ- ସ୍ୱନ୍ଦନ ଥୋଇ ମଲ୍ଲିକେ
ରଖି ଦେଇଥିବି ଧୋଇ ତଲ୍ଲିକେ ॥୩॥

ଲଳାଟେନ୍ଦୁ କବି ୨୦୧୭୧୦୧୩୧୬୦୦

**ବୁସ= water; ବ୍ୟୁତ୍ତ= wet, drenched; (ବୁସ-ବ୍ୟୁତ୍ତ= drenched in water;) ଉର୍ବରା= soil, earth; ବାସର=day; ପ୍ରଧାନ= reflecting, meditating upon, deep thought; ଅନ୍ଧିକା= night; ଦ୍ୱିଭାତ= morning; ଛନ୍ଦିକା= ଛନ୍ଦିହେଇ; ଦ୍ୱିଭାତ=**

**morning; ସଞ୍ଜନେ= ସଂଯୋଗ (ଆଗମନ)ରେ; ମୃଣ୍ମଟ= pot of soil, earthen pot; ମଲ୍ଲିକା= earthenware vessel of a certain form; ତଲ୍ଲିକା= keys;**

## ଧରା ଦେବି -080

ଜାଣେ ମୁଁ ପୀରତି ନିଦାରୁଣ ଅତି
ସଭିଏଁ କାନ୍ଦନ୍ତି କେହି ବାକି ନାହିଁ ।
ହେଲେ ତୁମ ସରି ମୋର ନାମ ଧରି
କେହି ତ ଏ ପରିକେବେ ଡାକି ନାହିଁ ॥ ୧ ॥

ପୀରତି ନିଶାରେ ନିୟତି ଇସାରେ
ତାମସୀ ଦିଶାରେ ଅସୁମାରୀ ଖାଲ ।
ସବୁ ଜାଣି ଶୁଣି ମୁଁ ପ୍ରେମ-ରଙ୍କୁଣୀ
ମିଠା ଲାଗେ ପୁଣି ତବ ପ୍ରେମ-ଜାଲ ॥ ୨ ॥

ପ୍ରିୟ ପାଶ ପାଇଁ ଯିଏ ଧାଇଁ ଧାଇଁ
ଥକି ଯାଏ ନାହିଁ ମୁଁ ସେହି ନିର୍ଝରୀ ।
ସରାଗ-ଜର୍ଜରା ମିଳନ-କାତରା
ନ ଦେଇ ମୁଁ ଧରା ରହିବି କି ପରି ॥ ୩ ॥

ଲଲାଟେନ୍ଦୁ କବି ୨୦୨୧୦୮୧୮୨୩୫୫

## ଜନଗହଳିର ପ୍ରେମଗୀତ -୦ 81

ଏଇଠି ଏଇ ଜନଗହଳି ଉଚ୍ଚ କୋଳାହଳେ,
ଖସି ଥିଲା ମୋ ମୁଦ୍ରାପେଟୀ ଅଜାଣତରେ ତଳେ ।
ସେଇଠି ମୋର ଠିକଣା ଦେଖି ମୋ ଘର ଖୋଜି ଦେଲ

ଅନେକ ଦେଖା ତାପରେ ହେଲା, ଅନେକ ନୂଆ ଖେଳ ।

ଦିନେକ ପୁଣି ତୁମ ହାତରୁ କଲମ ଗଲା ଖସି,
ଗୋଟଉଥିଲୁ ଏକା ସାଙ୍ଗରେ ଦି ମଥା ହେଲା ଘଷି ।
ନେତ୍ର ଟୋଳି ଏକ ଆନକୁ ଦେଖିଲୁ ଯେବେ ଦୁହେଁ,
କମ୍ପନ ଯା ଖେଳିଲା ସେ କି ଚମତ୍କାର ନୁହେଁ । 2

ଚମତ୍କାର ଚମତ୍କାର ପ୍ରେମ ସଞ୍ଚରଣ,
ଗ୍ରୀଷ୍ମ ନିଆଁ ଜଳିଲା ବେଳେ ମେଘ ବିସ୍ଫୂର୍ଜନ ।
ଶିଶିର କାଳେ ଉହ୍ନେଇ ଜାଳେ ଯେମିତି କହେ ମନ -
ଏଇଠୁ ଜମା ଉଠିବି ନାହିଁ, ସେମିତି ଲାଗେ ପ୍ରେମ । 3

ସେମିତି ପ୍ରେମ ବଢ଼ିଲା ଖାଲି ବଢ଼ି ଚାଲିବା ପାଇଁ,
ମେଘ ଉପରେ ଚଢ଼ିଲା ସିନା, ଆଉ ବଢ଼ିଲା ନାହିଁ ।
ଦହନେ ପଡି ପବନେ ଉଡି ଝରାଇ ଦେଲ ଲୁହ,
ପରାଣସଖା ! ଚାହିଁଛି ପଥ, କୁଆଡେ ଗଲ କୁହ । 4

ଏଇଠି କେତେ ମିଳନ ବିଦା ଏଇଠି ଶେଷଗତି,
ଏଇଠୁ ଧୂଳି ମଥାରେ ମାରେ ଶରଧା ଭରେ ଅତି ।
ବୁଝାଏ ମନ ମଥାଟି ଥିଲା ଶେଷକୁ ମୋର କୋଳେ,
ଏଇଠି ଏଇ ଜନଗହଳି ଉଗ୍ର କୋଳାହଳେ ।   5

**ଲଲାଟେନ୍ଦୁ କବି          202206220222**

## ଫେରୁଛି ଦାଦନ ପୁତ୍ର          -082

ମାଟି କହେ ଆସ ପୁତ୍ର
ଭାଇ କହେ ଫେରନା
ଦାଦନରେ ଯାଇଥିଲୁ
ଥିବ କାଳେ କରୋନା ॥ ୧
ସିଏ ତ ମୋ ମାଆ ନୁହେଁ

ନ ବୁଝିବ ବେଦନା
ମରୂ୍ଟୁ ତୋର ଏହି ପୁତ୍ର
ସେହି ପୁତ୍ର ତରୁ ମା ‖ ୨
ଦାଦନ ଆୟରେ ଗଢା
ଝାଟି ମାଟି ଘରଟି
ସୁଖେ ତହିଁ ରହୁ ତୋର
ପ୍ରଥମ କୁମରଟି ‖ ୩
ଏହି ପୁତ୍ର ସହି ପାରେ
କହି ବେଶି ପାରେ ନା,
ଯମଦ୍ୱାରୁ ଆସିଅଛି
ମରିବାକୁ ଡରେ ନା ‖ ୪
ଖୋଜିବୁନି କାହିଁ ବୋଲି
କୋଳପୋଛା କୁମର,
ଚଳିଲି ମୋ ଭାଗ୍ୟ ସାଥେ,
ଘର ଏବେ ତୁମର ‖ ୫
ଶ୍ରାଦ୍ଧ ପିଣ୍ଡ ଆଶେ ଯେବେ
ପିତା ହେବେ ଆହୂତ,
କହି ଦେବୁ - ଆସି ଥିଲା
ଖୋଜୁଥିଲା ବହୁତ ‖ ୬

ଲଲାଟେନ୍ଦୁ କବି        ୨୦୨୦୦୪୦୩

## କରୁଥିବି ଧରାବତରଣ                    -083

ଆକାଶ ତ ନୀଳ ନୁହେଁ
ସାଗର ବି ନୀଳ ନୁହେଁ ଜମା,
ନୀଳ ଖାଲି ଦେଖେ ସବୁ

ଏ ଆଖିର ଅନନ୍ତ ନୀଳିମା ।  ୧ ॥
ଅନନ୍ତ ସେ ବ୍ୟୋମ କୋଳେ
ଅତିକାୟ ଅଗ୍ନିପିଣ୍ଡ ପରି,
ଏ ଜନ୍ମ କର୍ମାବସାନେ
ଚଳିବି ମୁଁ ଅଦୃଶ୍ୟେ ସନ୍ତରି ।  ୨ ॥
ଅଥବା ସାଗର ଗର୍ଭେ
ନଷ୍ଟତନୁ ତରୀ ଭାଗ୍ୟ ଧରି
ତୁମ ଦୃଷ୍ଟି ଅନ୍ତରାଳେ
ହଜି ଯିବି ଟାଇଟାନିକ୍ ପରି ।  ୩॥
ଭୁଲି ମୋତେ ଯିବ ତୁମେ
ଅବିରାମ ସମୟ ସ୍ରୋତରେ,
ମୁଁ କିନ୍ତୁ ଆସିବି ଫେରି
ନବୋଲ୍ଲାସେ ନବକଳେବରେ ।  ୪ ॥
ମିଥ୍ୟା-ନୀଳ ଜଳଧରେ,
ମିଥ୍ୟା ନୀଳ-ଆକାଶେ ରଙ୍ଗିମା
ନିତ୍ୟ ବଲ୍ଲୀ-ତରୁବରେ,
ଗିରି ଝର-ତୀରେ ସବୁଜିମା ।  ୫ ॥
ସବୁଜିମା ଅନ୍ତରାଳେ
ନୃତ୍ୟରତ ଜୀବନ୍ତ ଯୌବନ,
ପ୍ରତି ସମ୍ବସ୍ତରେ ଖେଳେ.
ନବପ୍ରାଣେ ନବୀନ କମ୍ପନ ।  ୬ ॥
ସ୍ୱପ୍ନଭରା ଏ ନୟନେ
ସୌନ୍ଦର୍ଯ୍ୟର ଉଗ୍ର ଆକର୍ଷଣ,
କରୁଥିବି ଏ ଭୁବନେ
ବାରମ୍ବାର ଧରାବତରଣ ।  ୭ ॥
[ଏଥିରେ ପ୍ରଥମ ପଦଟି : ଅସିତ କବି]

## ମିଠା କବିତା



ଲଲାଟେନ୍ଦୁ କବି   ୦୧୮୦୬୨୨୧୩୨୧

## ପ୍ରେମ-ଉପଚାରୀ -084

ନୟନେ ସମ୍ଭାଷିଲ     ନଗରେ ନ ଆସିଲ

ଗହନ ବନ ସହଚରୀ

ଦିନେ ତ ଦେଇ ଦେଖା     ଦେଖିଯା ଦୀନସଖା

ହୃଦୟଦହନ କିପରି ।।   ।।୧

ଯେ କରେ କରି କର     କହିଲ କର୍ଣ୍ଣେ ଗିର:

ରାଣ ମୋ ସଖା କାଳେକାଳେ

ଥିବି ମୁଁ ତୁମ ସାଥେ,     କେମନ୍ତ ସେହି ହାତେ

ବିଚ୍ୟୁତ କଲ ଚୂତମାଳେ।। ।।୨

*ବିଚ୍ୟୁତ= ବିଚ୍ଛିନ୍ନ; ଚୂତମାଳ= ଆମ୍ବତୋଟା;*

ଶବଦଟିଏ ରାଣ,     ତା ଦେହେ କି ବା ଟାଣ?

ବିଲକ୍ଷଣାଣ ପଦକରେ

ବିକଳେ ଢାଳେ ଲୁହ     ଯେସନ ମହୀରୁହ

ଅମ୍ବରସଲିଳ ପ୍ରଖରେ ।।     ।।୩

*ବିଲକ୍ଷଣାଣ ପଦକରେ= ଶାଣଦିଆ କଥା ପଦେରେ; ମହୀରୁହ= ଗଛ; ଅମ୍ବରସଲିଳ= ବର୍ଷା;*

ରାଣର ପୂଜାକ୍ଷେତ୍ରେ     ଦେବୀମା ଭିଜାନେତ୍ରେ

ଦେଖି ଯା ଥରେ କେତେ ବାରି,

ତା ହୃଦ ଯିବ ଦହି,        ପାରୁନି ତାକୁ କହି

ମୁଁ ତୁମ ପ୍ରେମ-ଉପଚାରୀ ॥        ॥୪

*ଉପଚାରୀ= ଉପାସକ, ପୂଜାରୀ;*

ବାଣୀପୁତ୍ର    ୨୦୨୦୦୮୦୮୨୨୧୦

## ଆସିବ ସାଥୀ                                   -085

ଅକ୍ଷରେ ଅକ୍ଷର ଯୋଡି

କବିତା ବିତାନ ଗଢି

ବସିଛି ଆସିବ ସାଥୀ,

କେବେ ହେବ ଆର ଘଡି ॥୧

ଗଡି ଗଡି ଯିବ ଖରା

ବଢି ବଢି ଯିବ ଛାଇ,

ମରି ମରି ଯିବ ଧରା,

ବସିଥିବି ବାଟ ଚାହିଁ ॥୨

ଆସି ମୋର ପରଦେଶୀ

ନେବ ମୋର କର ଧରି,

ହେଲାଣି ମୋ ପ୍ରତିବେଶୀ,

ରଖିବ ଘରଣୀ କରି ॥୩

ଡାକିବ ଜୀବନସାଥୀ

ମରମରେ ପ୍ରେମ ଭରି,

ଶୁଣୁଥିବି ମଥା ପାତି,

ସରମରେ ଯିବି ସରି ॥୪

ପିତା ଦେବେ ତାକୁ ତୋଳି

ବଖରେ ଛପର ଘର,

ଆମ ସାହି ପଛ ଗଳି,

ଦିଶୁଥିବ ବାପଘର ॥୫

ବାଣୀପୁତ୍ର ଲଲାଟେନ୍ଦୁ କବି  ୨୦୨୦୦୬୨୨୧୮୫୦

## ଅଧୁରା ପ୍ରେମର ନାୟିକା -086

ଦୂର କେଉଁ ଝାଉଁବନେ  ଥିବ କାହା ପ୍ରିୟା
ଭାବୁଥିବ - ହେଇଯିବ  ଚନ୍ଦରଉଦିଆ,  ୧

ତଥାପି ଆଖିର ଆଶା  ପୂରିବ କି ନାହିଁ,
ବସି କିଆଁ ରହି ଥିବି  କାହା ପଥ ଚାହିଁ ।୨

ଦେଖୁ ଦେଖୁ ଆସିଗଲା  ଛାଇଲେଉଟାଣି,
ବେନି ନେତ୍ରୁ ଲୁହ ଝରି  ଶୁଖି ସରିଲାଣି,  ୩

ସବୁ ଆଶା ରହିବ କି  ଅଧୁରା ଅଧୁରା,
ପଥ ଚାହିଁ ଲାଗିଲାଣି  ବିଧୁରା ବିଧୁରା,  ୪

କାହା ଲାଗି ଆସିଯାଏ  ଦୁଃଖ ଅହେତୁକୀ,
ମୁହଁ ସାରା ଲୁହ କିଆଁ  ରହିଥାଏ ଶୁଖି ।  ୫

ଏ ଭାବେ କି କଟିଯିବ  ଦୁଃଖିନୀ ଜୀବନ,
କେହି ଆସି ନ କହିବ  ପ୍ରୀତିର ବଚନ !  ୬

ଲଲାଟେନ୍ଦୁ କବି  ୨୦୧୯୦୮୧୧୧୩୨୩

## ଧୂମଳ ନିଶୀଥର ପ୍ରୀତିଗୀତ -087

ଆଶାରେ ଆଶାରେ ଅଳପ ଭାଷାରେ

ଅକୁହା ଅନେକ କଥା ।

ମରମ କୁହରେ ଗରମ ଲୁହରେ

ଅଭୁଲା ଅନେକ ବ୍ୟଥା । ୧

ଅଳପ ଗୀତରେ ବହଳ ଚିତ୍ତରେ

ଦୃଗ୍ଜଳ ରଖିଛି ଭରି,

ସେ ନିତ୍ୟ ନୀରବ ପ୍ରେମୀର ବିଭବ

କି ବୁଝିବ ସୁନାପରୀ ? ୨

ଦୃଗ୍ଜଳ= ଲୁହ;

ଦୂର ପରବତେ ଧୂମଳ ଶରତେ

ସେ ଗୀତ ଗାଇଲା ପରେ,

ଶୀତଳ ସମୀରେ ବିତଳ ଅଧୀରେ

ବିଳପି ଉଠିଲା ଥରେ ।୩

ଧୂମଳ= ଧୂଆଁଳିଆ; ବିତଳ= ଗଭୀର ନର୍କ

ବିଳପି ଉଠିଲା ଶିହରି ଫୁଟିଲା

କୁଆଁରୀ କୂଟଜ କଳି,

ସରୋବରଜଳେ ସରୋଜ ସକଳେ

ଶୋଇଗଲେ ନେତ୍ର ମଳି ।୪

କୂଟଜ= ମଲ୍ଲୀ ପରି ଏକ ଫୁଲ

ତୁମେ ବାହୁଡିବ,          ଦୂରେ ଚାହୁଁଥିବ

ପ୍ରେମପକ୍ଷୀ ମନ ମାରି,

ଥିବ ସେ ନିଶୀଥ          ବିରହେ ବୀକ୍ଷିତ,

ସୁରରପଥସୁକୁମାରି ।୫

ବୀକ୍ଷିତ= extended, ପ୍ରବର୍ଦ୍ଧିତ, ଦୀର୍ଘୀକୃତ; ସୁରପଥ= ସ୍ୱର୍ଗ; ସୁକୁମାରି= ସୁକୁମାରୀର ସମ୍ବୋଧନ ରୂପ;

ଲଳାଟେନ୍ଦୁ କବି (ବାଣୀପୁତ୍ର) ୨୦୧୯୦୮୧୧୨୩୩୫

## ନିଜ ଗ୍ରାମ                                    -088

ଚବିଶ ବରଷ ପର

ପରବାସ ଦେଲି କାଟି,

ଆସିବ ଶିବମନ୍ଦିର

ଏବେ ସେହି ଗହୀରାଠି | ୧

ଅମ୍ବରୁ ବରଷା ବାରି

ଆବର ବରଷିଲାଣି,

ଧର ଧର ଶରଧାରେ

ଧାରେ ସେ ଦାର୍ଦ୍ଦୁର ପାଣି | ୨

ଏବେ ସେ ବସୁଧା ସୁଧା

ପରଶିବ ରାତି ଦିନ,

ଶସ୍ୟେ ଭରା ଅନାବିଳ

ବିଲରେ ଖେଳିବେ ମୀନ | ୩

ଥିବେ କି ସେ କୃଷ୍ଣସାର,

ସାରସ ଜାତିକି ଜାତି?

ପ୍ରୀତିପୂର୍ଣ୍ଣ ପୂର୍ଣ୍ଣମାସୀ,

ମଷିବର୍ଣ୍ଣ ବର୍ଣ୍ୟସାଥୀ ? ୪

ଥିବ କି ମୋ ଚାଟଶାଳୀ,

ଶାଳିଗୋପ ଚାଳୀ ଘର?

ଥିବ ତ ସେ ଖର-ସୁଆ,

ଶୁଆ ସାରି ପକ୍ଷୀସ୍ୱର ? ୫

ଗିରିଶିଖ ଶାଖେ ଥିବ

ବୀତଶଙ୍କ ଶଙ୍ଖଚିଲ?

ଅବାଧ ବାଦଲ ତଳ

ତାଳବନ, ପଙ୍କବିଲ? ୬

ଏ ଜଗତ ଗତରସ,

ଥିବେ କି ସେ ସାଙ୍ଗ ସାଥୀ?

ଦେବେ ସେ ସେନେହ ଢାଳି

ଥିଲେ ତାଙ୍କ ପୁଅନାତି? ୭

ବିପର୍ଯ୍ୟସ୍ତ ପର୍ଯ୍ୟସ୍ତ ବା,

ଦେଖ ସ୍ୱୀୟ ଗ୍ରାମ ଥରେ,

ଖୋଜିବ ଜୀବନ ଯାତ

ବନସ୍ତରେ ସ୍ତରେ ସ୍ତରେ | ୮

ଲଲାଟେନ୍ଦୁ କବି ୨୦୧୯୦୪୧୦୦୩୦୩

## ମୋତେ ନ ପାରିବ ଭୁଲି -089

ମୋ ପରେ ଏ ପୁରେ ପରଶି କବିତା

ହରଷେ କିଏ ରେ ତୋଷିବ ଯୋଷିତା !

ମୋତେ କେବେ ତୁମେ ନ ପାରିବ ଭୁଲି;

ଖୋଜିବ — ଏ ଭୂମେ ଆସ ଥରେ ବୁଲି ॥୧

**ମିଠା କବିତା**

ଅଛି ବୋଲି ପାଶେ,　　ପାରୁ ନାହଁ ଜାଣି;
ଗଲେ ପରବାସେ　　ଦେଖିବ ଉଜାଣି ।
ଦିଅ ଏବେ ଢାଳି　　ଯେତେ ଦେବ ଗାଳି,
ଗଲେ ଏଠୁ ଚାଲିଝୁରୁଥିବ  ଖାଲି ॥୨

ଝୁରିବେ ବାସର,　　ଯାମିନୀ, ଚାନ୍ଦିନୀ,
ସରିତର ଝର,　　ସମୀର, ଦାମିନୀ ।
ଏଇ ବନ ମଲ୍ଲୀ,　　ଏ କାନନ ଛଲ୍ଲୀ,
ଏଇ ପୁରପଲ୍ଲୀ　　ଏହି ପୁତ୍ର ତଲ୍ଲୀ ॥୩॥

ଲଳାଟେନ୍ଦୁ କବି　　୨୦୧୮୦୧୨୬୧୦୨୮

ବାସର= ଦିବସ; ସମୀର= ପବନ; ଦାମିନୀ=
ବିଜୁଳି; ଛଲ୍ଲୀ= ଲତା; ତଲ୍ଲୀ= ଝିଅ

## ଅଶ୍ରୁଲେଖା　　-090

ବିପଥ ବୀଥିରେ　　ବିହତ ପ୍ରୀତିରେ
　　ବେପଥୁ ଅଧୀର ବାତେ,
ସଂଶୀତ ନିଶାରେ　　ଅସିତ ଦିଶାରେ
　　ଅଶନିର ଅଭ୍ର୍ୟପାତେ, ୧

ନିଶୀଥିନୀ ଉରୁ　　ଭେଦି ଯେବେ ଦୂରୁ
　　ଝରେ କୁମୁଦିନୀ ରେଖା,
ବାଦଲ ଭିତରେ　　ଲୁଚି ଅନମ୍ବରେ
　　ଟିକି ତାରା ଦିଏ ଦେଖା; ୨

## ମିଠା କବିତା

କହ ତେବେ ସାଥୀ ଲାଗିଲେ ସେ ରାତି
ପରବାସେ ଏକା ଏକା,
କେବେ କି ଚଢିଛ ସ୍ମୃତିର ପାବଚ୍ଛ,
ପଢିଛ ତା ଅଶ୍ରୁଲେଖା ?୩
୨୦୧୯୦୮୩୦୧୦୦୩

ଶୁଣିଛ କି ତାର ଖିନ୍ନ କବିତାର
ଭିନ୍ନ ଏକ ମଧୁ ସ୍ୱର?
ଦେଖିଛ ତପତ କ୍ଳେଶିତ ଅହତ
ଲୋହିତ ଶୋଣିତ ଝର? ୪

ବିହତ= ଖଣ୍ଡବିଖଣ୍ଡିତ, ବିଦୀର୍ଣ୍ଣ; ବେପଥୁ= କମ୍ପିତ;
ସଂଶୀତ= ହେମାର୍ଦ୍ଦ; ଅହତ= (ଏବେ ସୁଦ୍ଧା) ଅକ୍ଷତ;

ଲଳାଟେନ୍ଦୁ କବି ୨୦୧୯୦୮୩୧୦୧୩୦

## ଅକାଳେ ଆସିବ ବୋଲି -091

କେବେ ତୁମେ କାଳେ ଏଇ ତୋଟାମାଳେ
ଅକାଳେ ଆସିବ ବୋଲି
ରଖିଛି ବଞ୍ଚାଇ ହେନା ଯୁଈ ଜାଇ
ସେଇ ବାଡି ବରକୋଳି ।୧

ସେଇ ପଡିଆରେ ଟିକି ଗଡିଆରେ
ଛାଡିଅଛି ସୁନା ମାଛ,
ସେ ମାଟି କଣ୍ଢେଇ ଦେବାକୁ ଗଢେଇ
ରଖିଅଛି ସେଇ ଛାଞ୍ଚ ।୨

ମିଠା କବିତା

ଖେଳିବା ପାଇଁକି	ରଖିଛି ଆଣିକି
	ସେଇ ଆଳି ସେଇ ବାଟି,
ସେ ଖପର ଗେଟି	ଖୋଜି ଏଠି ସେଠି
	ରଖିଅଛି ଗାର କାଟି । ୩

କାଇଁଚର ମାଳି	ପତର କାହାଳୀ
	ସେଇ ନଡା ଚାଳି କାନ୍ଥେ
କଣ୍ଟା ପିଟି ଦେଇ	ରଖିଛି ଟଙ୍ଗେଇ
	ଦେଇ ଦେବି ସେଇ ହାତେ । ୪

କଦଳୀ ପଟୁଆ-	ବୋଇତ, ଫରୁଆ,
	ଗୋଟା ଗୁଆ, କଟା ଜରି
ରଖିଛି ସାଇତି	ରାତି ଗଲେ ବିତି
	ତିନ୍ତିବାକୁ ମନ ଭରି । ୫

ପାଳଭୂତ ପାଖେ	କାନ୍ଧ ଉଛ ଯାକେ
	ସଜାଇଛି କୁମ୍ଭା ଘର,
ପଡିବ ଘୁମେଇ	ରଖିଛି ଉହ୍ଲେଇ
	ଶୀତକୁ ନ ଥାଇ ଡର । ୬

ତାଳ ବନ ତଳେ	ନାଳ ଝର ଜଳେ
	ଝଟା ମଞ୍ଜା ନଡା ଚାଳ,
ରଖିଛି ଗଡାଇ	ଦିପହରେ ଯାଇ
	ଶୁଖାଇବା ପାଇଁ ଝାଳ । ୭

ରକତ ଝରାଇ	ରଖିଛି ସଜାଇ
	ସବୁ ସଜ ତୁମ ପାଇଁ,
ତୁମର ତ କାହିଁ	ଦରଶନ ନାହିଁ,
	ଏକା ମୁଁ ବସିଛି ଚାହିଁ । ୮

ଜୀବ ଥିବା ଯାକେ          ଏଇ ତୋଟା ପାଖେ
          ପଥ ଚାହିଁ ବସିଥିବି
ସ୍ମୃତିର ସଙ୍ଗାଳି          ରଖିଛି ପଖାଳି
          ଶେଷ ଯାକେ ସମ୍ଭାଳିବି । ୯

ଲଲାଟେନ୍ଦୁ କବି          ୨୦୨୦୧୨୦୬-୨୨:୦୦

## ପୃଥ୍ୱୀ ବଡ ବିନାଶିନୀ          092

ଧୂଆଁ ଧୂଆଁ ଦିଶେ          ମେଘୁଆ ଆକାଶେ
          ଚିହ୍ନା ଚିହ୍ନା ନୂଆ ମୁଖ;
ବିସ୍ତାରି କୁନ୍ତଳ          ପ୍ରସାରି ଭୂତଳ
          ଭରିଗଲା ଅଭୀରୁକ ।୧ ।।
(ଅଭୀରୁକ=ଆକାଶ)

ଗଣ୍ଡଦେଶେ ତାର          ଲୁହ ଧାର ଧାର
          ଶୁଖିଲା ଭାଷାର ମୁହଁ,
ନିରତ ଭାବୁଛି          କି ଦୋଷ କରିଛି,
          ସବୁ ଦୋଷ ତାର ନୁହଁ ।୨ ।।

ଥରେ ସେ ଉଦାସୀ          ଶୁଣିଲେ ଭରସି
          ବୁଝାଇ କହନ୍ତି ତାକୁ,
କଥା ଟିକିଟିକି          ନ ଧରି ସାଥୀକି
          ସାଥେ ଧରି ରଖିବାକୁ ।୩।।

ହାତ ତାର ଧରି          କହନ୍ତି ବିସ୍ତାରି
          ଏଇପରି ହାତ ଧର;
ସାଥୀ ତୁମ କାହିଁ          ଖସି ଯିବ ନାହିଁ,
          ସେ ତ ନୁହଁ ସାତପର ।୪।।

ଏବେ ଆଗପରି  କର ଯା ସୁନ୍ଦରୀ
  ପୁଣି ମନ ଦିଆନିଆ,
ଆପଦେ ସମ୍ପଦେ  ହୁଅ ପଦେ ପଦେ
  ଏକ ଆନପାଶେ ଠିଆ ।୫॥

ଶୁଣ ଆନମନା  ତୃଷିତା ଲଳନା
  ପ୍ରେମାମୃତ ପ୍ରତ୍ୟାଶିନୀ,
ଅଳପ ଦିନର  ତୋଳ ଯା ସଂସାର,
  ପୃଥ୍ୱୀ ସଦା ବିନାଶିନୀ ।୬॥

ଲଲାଟେନ୍ଦୁ କବି  ୨୦୧୮୦୬୨୩୧୨୩୫

**କୋଣାର୍କ ପଥର କାନ୍ଦେ, ପୁତ୍ରହରା କାନ୍ଦେ**

-093

ପାଷାଣ ପ୍ରତିମା ଜାଗିଲେ ଧରମା
  କଅଁଳ ପରଶ ପାଇ;
ହାରିଲା ବାଳୁତ ଜୀବନ, ମହତ
  ରଖିଲେ ବଢେଇ ଭାଇ ।୧॥

ପାଷାଣ ସାଥୀରେ ବିଳପି ରାତିରେ
  କାନ୍ଦିଲା ଅବନୀ ରାଣୀ,
ଗୁରୁଜନ ଜନେ ଜାଣି ବି ମଉନେ,
  ନ ସ୍ଫୁରିଲା ଆହା ବାଣୀ ।୨॥

କାନ୍ଦୁଛନ୍ତି ଆଜି ସେ ପଥର ରାଜି
  କାନ୍ଦୁଛି ବିଜନ ବେଳା,
ଛୋଟିଆ ସେ ଦେହ, ଏଡେଟେ ହୃଦୟ
  କେମିତି ଗୋପନେ ଥିଲା !୩॥

କାନ୍ଦୁଛି ଭୂଧର ସରିତ ସାଗର
ବରଷା କାକର ପାଣି,
ପଥର ମୂରତି କାନ୍ଦି ଦିନରାତି
ଛାତି ଫାଟି ପଡିଲାଣି ।୪॥

କର୍ବଟ କନ୍ଦରେ ଖର୍ବଟ ଘାଟରେ
କାନ୍ଦୁଛି ବତାସ ବାଆ,
ଜନପଦଜନନେ ଜାଣିଲେ ଢନନୀ
ଜୀଅନ୍ତା ଜଳନ୍ତା ନିଆଁ !!୫॥

ଧରମା ଜନନୀ ବୀରପ୍ରସବିନୀ
ଜିଭ ତୁନି, ଆଖି ନିଆଁ;
ପୁତ୍ରହନ୍ତା ପତି ନେଲେ ବୀରଗତି
ସୁତ ନ ଫେରିବ ଆହା ।୬॥

ଲଲାଟେନ୍ଦୁ କବି   ୨୦୧୬୧୧୦୬୧୧୧୦*

**ଜାରଜ ସନ୍ତାନ**   -094

ଜାରଜ ଶାବକ   ଆରତ ବାଳକ
ଅଇଁଠାପତରେ   ଧ୍ୟାନ,
ଉଦରେ ଆକ୍ରୋଶ,   ଥାଏ ସେ ବିରୋଷ
ସହି ଦୈନ୍ୟ ଅପମାନ ।୧

ଉଚ୍ଛିଷ୍ଟର ଖଲି-   ଅନ୍ନ ମୁଖେ ବୋଳି
ତୋଳିଅଛି   ଶରୀରକ:
ଫିଙ୍ଗା ଚଉତିର   ଦଧିନଉତିର
ଭଙ୍ଗାଫଟା କୋଣାରକ ।୨

ଚାଳ ନାହିଁ ତାର, ଝାଳର ସଂସାର
ନାହିଁ ବନ୍ଧୁ ପରିଜନ;
ଅଛି ଗୋଟେ ମନ, କୈଶୋର ଯୌବନ,
ଭୂତଭବିଷ୍ୟ-ସପନ ।୩

ବରଷା ଶୀକରେ ଗ୍ରୀଷମ ପ୍ରଖରେ
ଜଳେ ସ୍ଥଳେ ନିରାଶ୍ରୟ,
ନାହିଁ କା ଗ୍ରନ୍ଥରେ, ଆଧାର-ପତ୍ରରେ
କୁଳଗୋତ୍ରପରିଚୟ ।୪

ଶ୍ୱାପଦ ଶୃଗାଳ ମୂଷକ ବିଡାଳ
ଶଶକ ଛାଗଳ ପରି
ତୁମ ଲାଗି ଜନ୍ତୁ, ବଞ୍ଚି ଅଛି କିନ୍ତୁ
ନର-କଳେବର ଧରି ।୫

କା ଉଦରଜାତ କେ ତା ପାପୀ ତାତ
ତେଜିଲା ଗର୍ଭ-ଉଦୟେ,
ଏ ପୁଣ୍ୟ ଧାମର ଭାବ୍ୟ ଅନ୍ତଃସ୍ୱର ।
ବିଧ୍ୱସ୍ତ ନର-ବିଗ୍ରହେ ।୬

ଲଲାଟେନ୍ଦୁ କବି ୨୦୧୮୦୭୧୨୧୬୪୯

## ଦେବକନ୍ୟା ଫେରି ଆସ -095

ଦେଖି ସେଇ ଶାଢୀ ଥକିଗଲି ଡାକି
ଚାହିଁ ଚାହିଁ ଆଖିନୀର;
ଯାହା ଥିଲା ବାକି କୋହ ଜାକିଜାକି
ଶୁଖି ଶୁଖି ଗଲା ଗିର ।୧॥

**ମିଠା କବିତା**

କାହିଁ ହଜି ଗଲ          କିସ ଖୋଜି ଗଲ
ମଜି ଗଲ କାହା ପାଇଁ:
କଇଁ କାନ୍ଦୁ ଥିଲା          ନଈ କାନ୍ଦୁ ଥିଲା
ଚାନ୍ଦ ଉଇଁ ଥିଲା ଚାହିଁ ।୨॥

ଭଦୁଅ କିଆରୀ          କାଦୁଅ-ଉଦ୍ଧାରୀ
ପଦୁଅଁ ପୋଖରୀ ପାଣି,
ସେ ପୋଖରୀ ମୀନ          କାନ୍ଦି ଦିନ ଦିନ
ତନ୍ନ ତନ୍ନ ଖୋଜିଲାଣି ।୩॥

ପଡିଆ ପଛରେ          ଗଡିଆ ପ୍ରଚରେ
ନଡିଆ ଗଛରେ ଯାଇ
ବାଇ ଚଢେ ଇଟି          ଡେଣା ପିଟି ପିଟି
କାନ୍ଦେ ପିଠି ଓହଳାଇ ।୪॥

ସେ ଘର ଗୁହାଳ          ଖମାର ପୁହାଳ
ଘଡିଆଳ ଘେରା ସୁଅ,
ଝୁରି ଦିନ ରାତି          ମରି ଯିବେ ସାଥୀ
ଗୋଧନ ଗୋପାଳ ପୁଅ ।୫॥

ସୁବର୍ଣ୍ଣ ମେଖଳା          ନେତ୍ରାଞ୍ଜନ କଳା
ବସନ ଉଜ୍ଜ୍ୱଳା ବାସ,
ଏବେ ମିଳେ ନାହିଁ          ତରୁ ତଳେ କାହିଁ
ମୃଦୁଳ ସେ ଚାରୁ ହାସ ।୬॥

ଅରୁଣ ଉଦୟେ          ତରୁଣ ହୃଦୟେ
ବିଚୂର୍ଣ୍ଣ ପ୍ରତ୍ୟୟ ଗ୍ରାସ,
ଦୁର୍ଦମ୍ୟ କାମନା          ଦୁଃସହ ବେଦନା,
ଦେବକନ୍ୟା ଫେରି ଆସ ।୭॥

**ମିଠା କବିତା**

*ଲଲାଟେନ୍ଦୁ କବି*

*୨୦୧୮୦୭୦୪୦୪୦୦*

*ଶବ୍ଦାର୍ଥ* :—

ଶାକୀ= ଯାହାର ଶାକ ବା ତନ୍ତ୍ର ଥାଏ, ଗଛ;

ପ୍ରଚର= ତାରଣ ପଥ, ରାସ୍ତା;

ଉତ୍ପଳା= ଅତର ବିଶେଷ;

ବାସ= ବାସ୍ନା;

ପ୍ରତ୍ୟୟ= ବିଶ୍ୱା

ଲଲାଟେନ୍ଦୁ କବି ୨୦୧୮୦୭୦୪୦୪୦୦

**ଶବ୍ଦାର୍ଥ :—**

**ଶାକୀ= ଯାହାର ଶାକ ବା ତନ୍ତ୍ର ଥାଏ, ଗଛ; ପ୍ରଚର= ତାରଣ ପଥ, ରାସ୍ତା; ଉତ୍ପଳା= ଅତର ବିଶେଷ; ବାସ= ବାସ୍ନା; ପ୍ରତ୍ୟୟ= ବିଶ୍ୱାସ;**

 କାହିଁ ସେ ଦେବସୁତା ବାକି ଜୀବନ ସାରା

-096

ଅସୁରା ବୁକୁ ଚିରି ଆସିଲା ସୁନାପରୀ
ବସିଲା ପାଶେ ପାଶେ, ପ୍ରେୟସୀଟିଏ ପରି ॥1॥

ବାଦଲ ଛତା ପରେ ଆକାଶଲତା ଖରେ
ନାଚିଲା ବହୁ ଦୂରେ ଝଲସି ଥରେ ଥରେ ॥2॥

ଭେଦି ସେ ଛତାଟିକି ଆସିଲା ମଥାଠିକି
ଜଳ କଣିକା ଦେଖି ପସରା ଦେଲି ଟେକି ॥3॥

ଖାଲି କୁଡିଆଟିଏ, ପଡିଛି ଖୋଲା ମେଲା;
ପସରା ନେଇ ସିଏ ସେଇଠି ଥୋଇଦେଲା ॥4॥

**ମିଠା କବିତା**

ପୁରତ ଦୂର ନୀର,　　ସରିତ ହରବର
ଦୂରେ ପରିଧି ପାରେ　　ଧୀରେ ବାରିଧି ଝର ||5||

ଅଞ୍ଚତି ଗତି ପାତେ　　ଶୀକର ପରଶରେ;
ପାଦପେ ହ୍ଲାଦ ସାଥେ　　ଦୋଳିଲେ ହରସରେ ||6||
**ଅଞ୍ଚତି= ପବନ;**
ତାମସ ରାତି ଘେରି　　ଆସିଲା ନଇଁ ନଇଁ
ଡରି ମୋ ସୁନା ପରୀ　　କାନ୍ଦିଲା କଇଁ କଇଁ ||7||

କାହିଁ ସେ ବୋଲି ଚାହିଁ　　ଦେବାରେ ପରତସ
ନିକର କରମାଳେ　ଖେଳିଲା ଧାରେ ହସ ||8||
**ପରତସ= ପଛକୁ;**
ଥିଲା ନବବରଷ　　ଗୋଟାଏ ଦିନ ବାକିଐ
ବିତିଲା ଅହର୍ନିଶ　　ମଧୁ-ଆନନ ଚାଖି ||9||

ସେ ହେଲା ମୋ କବିତା,　　ସେ ହେଲା କବ୍ୟଧାରା
କାହିଁ ସେ ଦେବସୁତା　　ବାକି ଜୀବନ ସାରା ||10||

ଲଲାଟେନ୍ଦୁ କବି　　୨୦୧୭୧୨୩୧୧୫୪୧

## ଆଖିରେ ଉଛୁଳା ପାଣି　　-097

ଚୋରା ଚୋରା ପୀରତିରେ
ଆଖିରେ ଉଛୁଳା ପାଣି;
କେବେ ହେଇ ଥିଲା ଦେଖା
ଖାତାରେ ରହିଛି ଲେଖା
ଠୁଙ୍ଗାବାଲା ଖାତା କେବେ
ନେଇ ଗଲାଣି ||

ଠିକଣା ତା ଲେଖି ଗଲା
 ଉତ୍ତାଳ ଜଳଧି ତୀରେ,
ଦିଶୁଥିଲା ଫିକା ଫିକା
 ସିତସ୍ନାତ ସେ ରାତିରେ,
ଲୁଣି ମାଡ଼ି ସବୁ ଏବେ
 ଧୋଇ ଗଲାଣି ||

ସାଗରକୁ କଲେ ଦାନ
 କୂଳରେ ଫେରାଇ ଦିଏ,
ନେଇଛି ଠିକଣା ନାମ
 ଲେଖି ଦେବ ଦିନେ ସିଏ;
ସେ ଲାଗି ମୁଁ ପାରାବାର ତୀରେ
ବସିଅଛି ଭିଜି ନେତ୍ରନୀରେ ।
===========
ବାଣୀପୁତ୍ର ଲଲାଟେନ୍ଦୁ କବି ୧୦-୦୭-୨୦୧୫
ସିତ= ଚନ୍ଦ୍ରକିରଣ;
===========

**ଆସିବ ସତେ** -098

ସରିତ ତ୍ରୁତର ତାରେ
ସାଗର ଗର୍ଜନ ଗିରେ
ଘନ – ବଉଦ ଉଦକେ ଖରେ ଶୁଣେ,
ଦୂରେ ଦାରୁଣ କଟାକ୍ଷି
ଲାଜରା-କଜରା-ଆକ୍ଷି
ନିଶ୍ଚେ – ଆସିବ ଉଷସୀ ଘେନି ଦିନେ || -୧

ଆଶା ଆରତରତନ

ଊପୁରୁଣା ପରାଣଧନ,
ତାକୁ -- ଧରି ଧୀରଯେ ଅଛି ଜୀବନ;
ଉଷା ଈଷତ ଆଲୋକେ,
ପ୍ରଦୋଷେ ଦୂଷିତ ଶୋକେ;
ଥାଏ – ନିଶୀଥେ ନିଶତ ମାତ୍ର ମନ || -୨
ତୋ ଲାଗି ତରୁଣୀ ରାଣୀ

ମଳୟ ମାଳବ ଗୁଣି
ଜାଡ଼େ – ବଡ଼ଦାଣ୍ଡ ଦଣ୍ଡେ ନ ହୁଡ଼ିଲି;
କି ଭଳି ଭୁଲିବି ବାଳା,
ଭାଷିଲୁ ପୀୟୂଷବୋଳା --
ଦିନେ – ଆସିବି ରଥରେ ଥରେ ବୋଲି |-୩

ବିତି ଯାଏ ଯାତଯୁଥ;
ନଗର, ଖର୍ବଟ, ବଟ,
ପୀଠ – ଆପଣ, ବିପଣ, ଘାଟ ସାକ୍ଷୀ:
ତୋର ଆଶ୍ବାସେ ବିଶ୍ବାସି
ବେନି ନୟନ ଉନ୍ମେଷି
ଖୋଜେ – ଆସିଥିବ ନିଶ୍ଚେ ଚାରୁ-ଆକ୍ଷି || -୪

ଲଲାଟେନ୍ଦୁ କବି   ୨୦/୦୮/୨୦୧୬

ରୁତ= ଧ୍ୱନି; ତାର= ଉଚ୍ଚସ୍ବର, ଭଦନ= ଜଳ, ଖର= ପ୍ରବଳ,ଉଗ୍ର; ନିଶତ= (ରାତ୍ରୀରେ) ଉଜ୍ଜ୍ୱଳ; ମାଳବ= ଭାଗବିଶେଷ, ଯାତ= ଯାତ୍ରା, ପର୍ବ, ଯୁଥ= ସମୂହ ଖର୍ବଟ= ବଡ଼ ଗ୍ରାମ; ଆପଣ= ରାଜଧାନୀ; ବିପଣ= ବଜାର, ହାଟ

## ବସିଛି  ପଥ ଚାହିଁ   -099

ଦେଖ କା ଆଖିରୁ  ଲୋତକ ପଡୁଛି ଝରି,
ଶୀତ ପାହାନ୍ତିରୁ  ଚାହିଁଛି ତା ସୁନା ପରୀ  ! ୧

ମିଠା କବିତା

ନିଃଶବ୍ଦ ଶର୍ବରୀ,  ନିଦ୍ରିତା ଅବନୀ ରାଣୀ,
ମଉନ ସେ ପରୀ,  ଆଖିରେ ଭରିଛି ପାଣି ! ୨

କୋହଲା ବତାସେ  ହିମ ବିନ୍ଦୁ ପଡେ ଖସି,
ଅସ୍ତାଚଳ ପାଶେ  ବାଦଲ ଉହାଡେ ଶଶୀ | ୩

ମୁକୁଳା ଅଙ୍ଗନ,  ବସନ ଚାଲିଛି ଭିଜି,
କୁହୁଳା କ୍ରନ୍ଦନ,  ମରମ ଯାଇଛି ସିଝି | ୪

କୁସୁମ କାନନେ  କୁଞ୍ଚିରେ ଥରେ ଫୁଲ,
କଅଁଳ ଆନନେ  ନେତ୍ରଝରେ କୋଟି ଝୁଲ |୫

କହିଗଲେ ପିତା  ଶୋଇଯିବୁ ଧନ-ମାଳି,
ବସିଛି ଦୁହିତା  ନିଶୀଥ ସଳିତା ଜାଳି  ! ୬

ମନ ତ ବୁଝେନା -  ଗଲା ଯେ ଫେରିବ ନାହିଁ,
ବସିଛି ଲଳନା  ଜନନୀର ପଥ ଚାହିଁ !  ୭

ଲଲାଟେନ୍ଦୁ କବି   ୨୦୧୯.୦୨.୧୫.୦୨:୧୯

## ଅଧୁରା କର୍ମଶାଳା -100

ଶାଶ୍ୱତୀ କୋଳେ ଭାସ୍ୱତୀ ତୁଳେ
ବିଶ୍ୱଭାରତୀ ବାଳା
ଅନ୍ତଃ ପ୍ରବେଶି ଦିଅ ସମ୍ଭାଷି,
ଆସ ମୋ କର୍ମଶାଳା ।୧

ମିଠା କବିତା

ଅନେକ ଲକ୍ଷ୍ୟ  କି ବା ମୁଁ ଦକ୍ଷ

କୁଶଳୀ ସବ୍ୟସାଚୀ,

ସମ୍ମୁଖେ ମୋର  ଶର୍ବରୀ ଘୋର

ବିରାଟ ପ୍ରଶ୍ନବାଚୀ ।୨

ରାତ୍ରୀ ସମୟ  ନିଃଶେଷ

ପ୍ରାୟ ପ୍ରତ୍ୟୁଷ ଆସେ ମାଡି,

ଶଯ୍ୟାରେ ମୋର ଝଞ୍ଜା ପ୍ରଖର,

ସଜ୍ଜା ପାରୁନି ଛାଡି ।୩

ଅନେକ ଶିଳ୍ପ   ଗଢିଛି ଅଳ୍ପ,

ଅଧୁରା କର୍ମଶାଳେ,

କରିବ ଅଥୟ ଅରୁଣ ଉଦୟ

ଅଦୟ ଚକ୍ରବାଳେ ।   ୪

ମସ୍ତକୋପରି ହସ୍ତକ କରି

ସନ୍ତକ ଦିଅ ଭରି,

ଅଛି ମୋ ରକ୍ତିଳ ଦିଅ ଗୋ ଶକ୍ତି,ୄଳ

ସରି ଯିବ ଶର୍ବରୀ ।୫

ମନ ଏଠି ନାହିଁ  ରହିବାର ପାଇଁ

ଏଇ ଅନ୍ଧାର ଗଡେ,

ସାରି ମୋ ଚିତ୍ର   ଗଲେ ମୁଁ ଶୀଘ୍ର

ନିର୍ଜନ ତାରାପଥେ,  ୬

ମାତୃ ଭାବନେ ପୁତ୍ର ଆନନେ

ଚୁମ୍ବନ ଦେବ ଥରେ,

ଆନ ଦର୍ଶନ ନ କରୁ ସନ୍ନ

ଭଗ୍ନ ଏ କଳେବରେ । ୭

**ମିଠା କବିତା**

ଶାଶ୍ୱତୀ= ପୃଥିବୀ; ଭାସ୍ୱତୀ= ଦୀପ୍ତି; ସବ୍ୟସାଚୀ= ଯେ ବାମ ଦକ୍ଷିଣ ଉଭୟ ହାତରେ କାର୍ଯ୍ୟଦକ୍ଷ; ସଜ୍ଜା= ହତିଆର; ଅଦୟ= ନିର୍ଦ୍ଦୟ; ହସ୍ତକ= ହାତ; ରକ୍ତି= ଅନୁରକ୍ତି; ସନ୍ନ= କ୍ଲାନ୍ତ, ଅବସନ୍ନ;

ଲଲାଟେନ୍ଦୁ କବି   ୨୦୧୯୦୯୨୨୧୧୪୬

## ପ୍ରେମ-ପ୍ରଧାବିନୀ-ତଟ-ସୁବର୍ଣ୍ଣ-ରେଣୁକା -101

**ଭାଗ - ୧**

ମନ ଯେବେ ଥକା ହେଲା ଉଛୁଳା ଜୁଆରେ,
କିଏ ଆସି ଦେଖା ଦେଲା ମୁକୁଳା ଦୁଆରେ ! ୧

ବିକଳେ ଚାହିଁଲା କିଏ ସଜଳ ନୟନେ
ଗପି ଗଲା କଥା ଖିଏ ଲାଜରା ବଦନେ ! ୨

କହି ଗଲା କାନେ କାନେ ଆ ଗୋ ପ୍ରାଣସଖା
ମୋ ବୀଣା କରୁଣତାନେ ତବ ପ୍ରେମ ରଖା ! ୩

ରଖିବ କି କରି ପାଶେ ଜୀବନ ସଙ୍ଗିନୀ,
ମୁଁ ତୁମର କାବ୍ୟାକାଶେ ମୌନ-ପତଙ୍ଗିନୀ ! ୪

ଆଦି ସଖା ତୁମେ ହିଁ ତ, ତୁମେ ପରା ଇତି,
ଗୋଟି ଗୋଟି ତୁମ ଗୀତ ରଖିଛି ସାଇତି । ୫

ପଢିଅଛି ଗୋଟି ଗୋଟି ବିଷାଦ ଲଗନେ,
ତପତ ଲୋତକେ ଲୋଟି ସପନ ଗଗନେ । ୬

ମିଠା କବିତା

ଭାବନା ରାଇଜେ ହଜି ବଜାଇଛି ବୀଣା,
ନାନା କଳନା ସରଜି, ସବୁ ମନଜିଣା ! ୭

ଭାବନାର ଆଦି-ଅନ୍ତ ତୁମେ ମୋର ସାଥୀ,
ତୁମ ଲାଗି ପ୍ରାଣବନ୍ତ ଘନ ଘୋର ରାତି । ୮

ସମୀରେ ପେଶିଛି କଥା ତରଳ ଅଧରେ
ଅଧୀରେ ଲେଖିଛି ବ୍ୟଥା ଅସଜ ପଦରେ ! ୯

ଲେଖିଛି ପା ଦେବକନ୍ୟା ପ୍ରୀତିର କାହାଣୀ,
ଦେଖିଛି ତା ସ୍ୱେଦବନ୍ୟା ଭୀତିର ଚାହାଣି । ୧୦

କଣ୍ଢେଇକି ପୁଅଝିଅ କରି ବାହାଘର
ସଜେଇଛି ଧୂପଘିଅ ଭରି ସାରାଘର । ୧୧

ସଜାଇଛି ଫୁଲହାରେ ମୋ ଘର ବିଛଣା
ସୁନା ଜରି ସମାହାରେ ଚାମର ବିଞ୍ଚଣା । ୧୨

## ପ୍ରେମ-ପ୍ରଧାବିନୀ-ତଟ-ସୁବର୍ଣ୍ଣ-ରେଣୁକା

**ଭାଗ - ୨**

ଦେଖିଆସ ଧାନବିଲ ସିଞ୍ଚିବି ଅତର
ଗଗନେ ଉଡିବ ଶିଳ ଭାସିବ ପଥର । ୧୩

ପରଶନ୍ତି ଅନ୍ନ ଥରେ ପଦୁଅଁ ପତରେ
ଆସିବ କି ମୋର ଘରେ କାଦୁଅ ପଥରେ । ୧୪

ଧୂଳିବାଲି ଗ୍ରାମପଥେ ପ୍ରେମର ଝରଣା,
କୂଳେ ତାର ନିଶାଗତେ କପୋତୀ-କାନ୍ଦଣା ।୧୫

ମିଠା କବିତା

ସାରସୀ ବିରହେ ଗୀତି ମୋ ଭାବନେ ମିଶେ
ତାମସୀ ବିଗ୍ରହେ ଭୀତି ସମ୍ଭାବନେ ଦିଶେ ! ୧୬

**ତାମସୀ= night; ବିଗ୍ରହ= body, separation, isolation; ନିଗ୍ରହ= limit, subjugation, disgust, restraint, confinement,;**

ସେ ସହିତେ ମିଶି ଗଲେ ନିଶାର୍ଦ୍ଧ ମର୍ମର
ନେତ୍ରନୀରେ ଭିଜି ଚଳେ ବିଶାଦଜର୍ଜର । ୧୭

ମର୍ମର= ପତ୍ରାଦିର କମ୍ପନଶବ୍ଦ;

## ପ୍ରେମ-ପ୍ରଧାବିନୀ-ତଟ-ସୁବର୍ଣ୍ଣ-ରେଣୁକା

**ଭାଗ - ୩**

ସାରସୀ ତନୟା ବନେ ଯାଇଅଛି ଉଡି,
ସେ କି ଆଉ ଏ ଜୀବନେ ଆସିବ ବାହୁଡି ! ୧୮

ଛାଡି ସେ ଯାଇଛି ତାର ପ୍ରୀତିଫୁଲ ହାର,
ସ୍ୟାହିଲେଖା ଚିଠିଗାର, ଗୀତିଲୁହଧାର । ୧୯

ଚିଠିରେ ବି ହାତଲେଖା ଯାଉଅଛି ଲିଭି,
ଲିଭିଲେ ବି, ଭାଗ୍ୟରେଖା, ତାକୁ ରଖିଥିବି । ୨୦

ଯିବି ଥରେ ସେହି ଗ୍ରାମ ଭାବିଅଛି ମନେ,
ଲେଖି ଦେବି ତାର ନାମ ନଦୀତଟବନେ । ୨୧

ନଥିବ ବିହଗସ୍ୱନ ସେହି ଝର ତୀରେ
ନଦୀ ହେବ ଅବସନ୍ନ, ଦେଖିବ ଅଚିରେ । ୨୨

ପ୍ରେମର ନିର୍ଝର-ବାଲି ହେମର କଣିକା,

ଝୁରି ମରୁଥିବ ଖାଲି ଦିବସ ଗଣିକା । ୨୩

ଆଉ ସେ କପୋତୀ ବାଳା ଫେରିବାର ନାହିଁ,

ମିଛ ସେ ସ୍ରବନ୍ତୀ-ଜ୍ୱାଳା ପଥ ତାର ଚାହିଁ । ୨୪

ଶୁଭିବନି ସେହି ପୁରେ ନୂପୁର-କିଙ୍କିଣି,

ଉଡି ଯାଇଅଛି ଦୂରେ ବିଧୁରପକ୍ଷିଣୀ । ୨୫

ତଥାପି ସେ ଗ୍ରାମ ଯାଇ ଦେଖିଆସେ ଥରେ,

ବୁଲିଥିଲୁ ଯହିଁ ଛାଇ-ଆଲୁଅ ଭିତରେ । ୨୬

ଘଟିଥିଲା ଯହିଁ  ଆମ ପ୍ରେମ ଆଲିଙ୍ଗନ;

ଲାଗୁ ସେ ବିଜନ ଗ୍ରାମ, ଏଠି ଯେ ବିଘନ । ୨୭

ବିଘନ= hurting, injuring;

2021-07-25/23:56

**ସୁନା ମାଛ** -102

**ସୁନା ମାଛ ୦୧**

ସୁବର୍ଣ୍ଣରେଖା ନୀରେ

ସୁନା ଇଲିସିଟିଏ

ଧରି ଦେଖିଲି ତୀରେ

ସୁନାର ପରୀ ସିଏ ॥ ୧ ॥

**ମିଠା କବିତା**

କହିଲା -- କୈବର୍ତ୍ତକ

ମାରନା ମୋତେ ବୋଲି;

ଜାଗିଲା କଉତୁକ;

ହସିଲି ମନ ଖୋଲି ॥ ୨ ॥

ଦେଖି  ସେ ଟିକି ପରୀ

କାତର ଅନୁନୟ;

ହୃଦେ ଶରଧା  ବାରି

ଝରିଲା  ଅତିଶୟ ॥  ୩ ॥

ବିପଣି ଗଲି କିଣି

କାଚର ମାଛ ଘର;

ରଖିଲି  ଭରି   ପାଣି

ଶଫରୀ-କନୀ ମୋର ॥ ୪ ॥

ଜଳପେ ଝସ-ବାଳା

ଶୋଇ ଯା ସଞ୍ଜ ହେଲା;

ଖୋଲିବ ବାସ ତାଲା

ହେଲେ ବିଭାତ ବେଳା ॥ ୫ ॥

ବାସ ବସଥ ପାଶେ

ଦେଖାଇ ଦେବ ସାଥେ;

ତାମସ ନିଶି ନାଶେ

ବାସର ଭାସ ପାତେ ॥ ୬ ॥

ଖିନ୍ନ ଅକ୍ଷରା ରାଶି

ଭେଦି କାନନ ଗିରି

ମେଦିନୀ ଯାଏ  ଗ୍ରାସି

ଯାମିନୀ ବୁକୁ ଚିରି ॥     ୭ ॥

ଅସୁରା ବରଷିଲା

ମନ୍ଦୁରା  ପାରି ଦିଅ;

ଶୟନେ ସପନର

ସୁରଭି ହରି ନିଅ ॥        ୮ ॥

(ଲଲାଟେନ୍ଦୁ କବି)

୨୦୧୭୧୧୧୮

ବିପଣି= market, shop; ଶଫରୀ-କନୀ= ଝସ-ବାଳା= fish- girl; ବାସ home; ତାଲା=lock; ବିଭାତ= morning; ବାସ, ବସଥ= dwelling house; ତାମସ  ନିଶି= dark night; ବାସର ଭାସ= day light; ଖିନ୍ନ= sad, distressed, fatigued, wearied, exhausted; ଅକ୍ଷରା= word, speech (a reference to the sound heard from air in a calm night); ଅସୁରା =darkness;  ମନ୍ଦୁରା = bed; ;

**ସୁନାମାଛ – ୨**

ରଜନୀ ପାହିବାରେ,

ଅବନୀ ଗାଇ ଉଠେ,

ରମଣୀ ପାଣି ଆଣି

ଚଳିଲେ ନଈ ତୁଠେ      ॥ ୯ ॥

ଗୋପାଳ ବାଳ  ଚଳେ

ଗୋଧନ ପଛେ ପଛେ;

ଖଗମ ତାନ ତୋଳେ

ବନ ଗହନ ଗଛେ        ॥  ୧୦॥

ଅମ୍ବରୁ ଲିଭି ଚାଲେ

ପ୍ରଭାତୀ ତାରା ଗୋଟି;

କେବେରୁ ଚଳି ଥିଲେ,

ଥିଲେ ଯେ କୋଟି କୋଟି ॥୧୧॥

ଶିଖରେ ଖରେ ଧାଏଁ

ସରିତ ଝରି ଝରି;

ମରି ତ ଯିବ ଛାଏଁ,

ଧାଏଁ ସେ ନୀର ଧରି ॥ ୧୨॥

ମନ୍ଦିର ଘଣ୍ଟ ବାଜେ

ତୁହାଇ ଥର ଥର;

ଅପତି କଣ୍ଠ ଭିଜେ

ବୁହାଇ ଆଖି ଝର ॥ ୧୩॥

କେ ଫୁଲ, କଢି ତୋଳି

ଚାଲିଛି ଉପବନ;

ଆନ କେ ପୋଡି ଜଳି

ଜଳାଏ ଯଉବନ ॥ ୧୪॥

ମୀନ-କନ୍ୟକା କହେ

ଏ ବେଳେ ମୋତେ ଡାକି,

ଉଠୁନ ସଖା, କିଏ

ସପନେ ଆସିଲା କି? ୧୫॥

ଶୟନେ ଅପକାର

ସନ୍ଧିର ସମୟରେ;

ବାସୁରା ଦିବସର

ମିଳନ ଅବସରେ ॥ ୧୬॥

(ଲଲାଟେନ୍ଦୁ କବି) ୨୦୧୭୧୧୧୯

## ମିଠା କବିତା

**ସୁନାମାଛ – ୩**

ଶୁଣି ତା ବାଣୀ ତେଜି
ଅଳସ ଶେଯଟିକି,
ଢାଳି କଳଶ ଜଳ
ଆଣିଲି ମେଜଠିକି ॥ ୧୭ ॥

ପ୍ରକ୍ଷାଳି ମୋ ଆନନ
କଲି ସ୍ନାନ, ଧ୍ୟାନ
ପ୍ରାତରଶନ ସାରି
କାଢିଲି ଚକଯାନ ॥ ୧୮ ॥

ଦେଖି ମୀନ-ବନିତା
କହିଲା ଏ କି କଥା;
ବହିଃସ୍ଥେ ବିହରିବ
ଛାଡି ନବ ଦୟିତା ? ୧୯ ॥

ହାଟେ ସେ ଛିଟ ପାଟେ
ଦିଶିଲା ଝିଲି ମିଲି
ପୁଟ ପଟଳ ଥାଟେ
ହସିଲା ଖିଲି ଖିଲି ॥ ୨୦ ॥

ଲେଉଟି ଦେଖିବାରେ
ବୁଲୁଛି ଫେରିବାଲା;
ତରାଟି ଆଖି ତା'ରେ
ଖୋଲୁଛି କାଚ ଡାଲା ॥ ୨୧ ॥

କହିଲି, "ପଥ ହୁଡି
ଆସିଲ ଚୁଡି ବିକି?"

କାଚରା ଚାହିଁ ଥାଏ

ଲାଜରା ମୁହଁଟିକି ॥ ୨୨॥

ପିନ୍ଧି ସେ ଚୁଡି ଶଙ୍ଖା,

ଭାଲେ ସିନ୍ଦୂର ଟୋପା;

ଝଲେ ନବ କଳିକା,

ଅନିନ୍ଦ୍ୟା ଅପରୂପା ॥ ୨୩॥

କଜରା କାଳି ଗାରେ

ନୟନପୁଟ ମାଜି

ଦେଲି ଗଜରା ହାରେ

ଘନ କବରୀ ସାଜି ॥ ୨୪॥

ବିତ୍ତ ସରିଲା, ଚିତ୍ତ

ଲାଗିଲା ଭାରି ଭାରି

ଆଉ ବୁଲନ୍ତା ମିତ,

ସଉଦା ଦେଲି ସାରି ॥ ୨୫॥

(ଲଲାଟେନ୍ଦୁ କବି)
୨୦୧୭୧୧୨୦୦୪୨୫

ଦୟିତା= GIRL/MISTRESS/LOVER; ପ୍ରାତରଶନ= BREAKFAST; ପୁଟ= eyelid; ପଟଳ= enclosing or surrounding skin or membrane; ଥାଟ=modesty; ଭଟ୍ଟାରିକା= noble lady, king’s mother;

**ସୁନାମାଛ – ୪**

## ମିଠା କବିତା

ପର ଦୋଷା-ବିନାଶେ

ତଟିନୀ ତଟେ ଚଳି;

ଚାର ଆହାର ନୀରେ

ଦେଲି ବଡିଶ ତୋଳି ॥ ୨୬॥

ଶଙ୍କଳୀ-ବାଳୀ ବୋଲେ,

ରହି ଯା ସାଥୀ ରହ;

ଚାର କି ଦେଲ ନୀରେ

ଶଙ୍କରୀ-ଚରେ କହ ॥ ୨୭॥

ଶର୍ଧସ ପାଶେ ବସି

ଦେଖିବି ବିଶ ନାଶ;

ସଙ୍ଗିନୀ ସାଜି ଶର୍ଧ

ନିବାସେ ରଚି ବାସ ? ୨୮॥

ଶାଶୁ ଶ୍ୱଶୁର ଶ୍ୟାଳ

ଶ୍ୟାଳିକା ସାଥୀ ନାଶି,

ହେମ ଆଭୂଷ ଦେବ

ମୋ ପ୍ରେମ ଅଭିଳାଷୀ ? ୨୯॥

ଆହାର ଦେଇ କରେ

ସଂହାର କରିବ କି ?

ନିଃଶେଷି ସ୍ୱଜନେ ମୋ,

ବୋଲିବ ମୋତେ 'ସଖୀ'?୩୦॥

ଶୁଣିଲି ବାଣୀ ତାର

ନ କରି ସହମତି;

ଧରି ସେ କର ମୋର

ବିନତି କଲା ଅତି ॥ ୩୧॥

ମଉନ ଉଦାସୀନ

ରହିଲି ତହିଁ ବସି;

ମୀନ-କୁମାରୀ ଧୀରେ

ଶିର ମୋ ଦେଲା ଘଷି ॥ ୩୨ ॥

ନିମ୍ରୁଚ ନଇଁ ନଭେ

ଉଇଁଲା କୁଆଁ ତାରା;

ସେ ତିଥି ନିରାହାରେ;

ବିତିଲା ରାତି ସାରା ॥ ୩୩॥

ଲଲାଟେନ୍ଦୁ କବି
୨୦୧୭୧୨୦୨୦୫୧୨

ଦୋଷା= evening; ବଡିଶ= fish-hook; ଶଲ୍କଳୀ= fish; ଶକ୍ୱରୀ= water; ଶକ୍ୱରୀ-ଚର= water-dweller, fish; ଶର୍ଧସ୍, ଶର୍ଧ= host; ବିଶ୍= family, tribe; ଆଭୂଷ= ornament; ନିମ୍ରୁଚ୍= evening;

**ସୁନାମାଛ: ଭାଗ-୫**

ତାପର ଧ୍ୱାନ୍ତ ଶୁଭ୍ର ଶ୍ୱାନ୍ତ

ଚନ୍ଦ୍ର ରଶ୍ମି ତଳେ

ଭାସେ ପ୍ରଚଣ୍ଡ ଅଭ୍ର ଖଣ୍ଡ

ଧୂମିତ ଅସ୍ତାଚଳେ ॥ ୩୪॥

କ୍ଷୁଧିତ ଲଗ୍ନ ମାନସ ମଗ୍ନ

ଭଗ୍ନ ଚିନ୍ତା ମେଳେ

ଅଳସ ନେତ୍ର ମେଦୁର ମନ୍ଦ୍ର

ତନ୍ଦ୍ରା ଘାରିଲା ବେଳେ ॥୩୫॥

ଶୀତ ଶଙ୍କୁଳ ଅଞ୍ଚଳତଳ
କମ୍ପିତ କନୀନିକା;
ତ୍ରସ୍ତ ମାନସେ ଉପଗତା ପାଶେ
ସୈନ୍ଧବ କନ୍ୟକା ॥ ୩୬॥

ପୃଷ୍ଠତଃ ମୋର ଶ୍ରଦ୍ଧ ସଧୀର
ଅଙ୍ଗୁଳ ସଞ୍ଚାଳି
କାତର-ହସ୍ତା ମୋ ପରେ ନ୍ୟସ୍ତା
ତ୍ରସ୍ତା ମତ୍ସ୍ୟ-ବାଳୀ ॥ ୩୭॥

ଧରି କନ୍ଧର, ସ୍ନିଗ୍ଧ ଅଧର
ଲୋଟି ମୋ ଗଣ୍ଡ ଦେଶେ
ଚୁମ୍ବନ ଗାର ଆଙ୍କିଲା ତାର
ପ୍ରୀତିର ସନ୍ନିବେଶେ ॥ ୩୮॥

ଚିତ୍ତ, କାୟକ ହେଲା ଭୃତ୍ୟକ,
ସେ ହେଲା ରାଜ୍ଞୀ ମୋର,
ଆଜ୍ଞାକାରିଣୀ ଭାଗ୍ୟଧାରିଣୀ,
କି ବା ମୁଁ ଚିତ୍ତଚୋର !! ୩୯॥

ନଦ-ନନ୍ଦିନୀ ବାସ-ବନ୍ଦିନୀ
ହୃଦ-ସ୍ପନ୍ଦିନୀ ସାଜି,
ପ୍ରାଣ-ସଙ୍ଗିନୀ ଭାଙ୍ଗି ଦେଲା ମୋ
ଦମ୍ଭ, ଦର୍ପ ରାଜି ॥ ୪୦॥

ଯେତେ ସହସ୍ୟ ହେଲେ ବି ପୁଂସ
ସ୍ତ୍ରୀତ୍ୱ ଶକ୍ତି ତଳେ
କାବେ ତ କାହାରି ବଶ୍ୟତା କରି
ରହେ ଏ ଭୂମଣ୍ଡଳେ ॥ ୪୧॥

ଯେତେ ମନସ୍ୱୀ ଅବା ସନ୍ୟାସୀ,
ଦମ୍ଭୀ, ପୃଥ୍ୱୀପତି --
ଥାଏ ପଶ୍ଚାତେ କେହି ସଙ୍ଗତେ
ଅଙ୍ଗନା ଭାନୁମତୀ ॥ ୪୨॥

ଭାଗ୍ୟେ ମୋ ଥିଲା ନିମ୍ନଗା-ବାଳା
ବଲ୍ଲଭା ସୁକୁମାରୀ,
ତା ଲାଗି ମୁଁ ଆଜି ହିଂସା ବର୍ଜି
ପର୍ଣ୍ଣାଶୀ ଶାକାହାରୀ ॥ ୪୩॥

ଲଲାଟେନ୍ଦୁ କବି ୨୦୧୭୧୨୧୧୦୩୫୭

ଧ୍ୱାନ୍ତ= night; ଅଭ୍ର= cloud; ମେଦୁର= dense; ମନ୍ଦ୍ର= soft; ଅଞ୍ଚଳ= shawl; କନୀନିକା= eye-ball; ସୈନ୍ଧବ କନ୍ୟକା= sea-girl; କନ୍ଧର= neck; କାୟକ= body; ଭୃତ୍ୟକ= se4rvant; ନଦ-ନନ୍ଦିନୀ= river-girl; ସହସ୍ୟ= mighty; ପୁଂସ= man(male person);
ଅଙ୍ଗନା= female person, woman; ଭାନୁମତୀ= ; ନିମ୍ନଗା-ବାଳା= mriver-girl; ବଲ୍ଲଭା= lover (feminine); ପର୍ଣ୍ଣାଶୀ= leaf-eater;

## ସୁନା ମାଛ ଭାଗ-୬

(ସେହି ସ୍ୱପ୍ନଟି କୁହ)

ପର ପ୍ରତ୍ୟୁଷେ ଖର ଉପୋଷ୍ୟେ
ନିଦ୍ରୁଶ-କନ୍ୟା ମେଳେ
ପ୍ରୀତି ବିମୁଗ୍ଧା ରଜନୀଗନ୍ଧା
ନେତ୍ର ମୁଦିଲା ବେଳେ; ୪୪

ସମ୍ଭ୍ରମେ ତାରେ ପ୍ରଶ୍ନ କଲାରେ –

କହିବି ଗଳ୍ପଟିଏ,
ଅଙ୍ଗେ ଝରା କି     କଳ୍ପନାଭରା?
ଏ ଭାବେ ଭାଷିଲା ସିଏ–     ୪୫||

(ଲଲାଟେନ୍ଦୁ କବି୨୦୧୭୦୭୦୩-୧୦୩୦)

## ସେଇ ସ୍ୱପ୍ନଟି କୁହ

ସେ କଥା କହନା     କରି ଆନମନା
ଯେ ଦିଏ ଆଖିରେ ଲୁହ
ଯେଉଁ ସ୍ୱପ୍ନଟି     ଦେଖିଲ ଏ ରାତି
ସେଇ ଗଳ୍ପଟି କୁହ ॥     ୪୬॥
ଯେଉଁ ସ୍ୱପ୍ନରେ     ଆଖି ପତା ଥରେ
ଓଠରେ ଉଛୁଳେ ହସ
ମୁଖମଣ୍ଡଳେ     କମ୍ପନ ଖେଳେ
ସେଇଥିରେ ଅଛି ରସ ॥ ୪୭॥
ଯେଉଁ ସ୍ୱପ୍ନରେ     ବକ୍ଷ କୁହରେ
ସ୍ପନ୍ଦନ ଯାଏ ଖେଳି,
ସ୍କନ୍ଦ ଶିହରେ     ମାଟି ଗନ୍ଧରେ
ମଧୁ ମୂର୍ଚ୍ଛନ ମେଲି ॥     ୪୮॥
ରାତି ଯାଏ ବିତି,     ସେଇ ସ୍ୱପ୍ନଟି
ଦେଖିଲ କି ନାହିଁ କୁହ;
ଯଦି ଦେଖି ନାହିଁ     କଥା ମାନି ଯାଅ,
ଆଉ ଦୁଇ ଘଡି ଶୁଅ ॥  ୪୯॥
ସ୍ୱପ୍ନରେ କବି     ଦେଖି ନୂଆ ଛବି
ଲେଖିବ ନୂତନ ତାନେ
ମଦିରାମଧୁର     ଗୁଞ୍ଜନ ଗିର
ଦେଇଯିବ କାନେକାନେ ॥     ୫୦॥

(ଲଲାଟେନ୍ଦୁ କବି୨୦୧୭୦୭୦୩-୧୦୩୦)

## ମିଠା କବିତା

## **ଛୋଟିଆ ମଣିଷ** -103

ଲଲାଟେନ୍ଦୁ କବି

ଛୋଟିଆ ମଣିଷ – ୧

ମୁଁ ପାଇଲି କୁନି ଭାଇଟିଏ

ମାଆ କହେ ପାଇଥିଲା ମୋତେ
ଠାକୁରଙ୍କୁ ମାଗି ମାଗି ସିଏ,
ମାଗିନି ମୁଁ ହେଲେ ବି ଠାକୁର
ମୋତେ ଦେଲେ କୁନି ଭାଇଟିଏ || -୧

ଶୋଇ ରହେ ଉଠିଲେ ସେ କାନ୍ଦେ,
ଖାଇଦେଲେ କି ଦେଖିବ ହସ,
ଟିକି ଝିଅ କୁହ ସିନା ମୋତେ
ମୋଠାରୁ ସେ ଛୋଟିଆ ମଣିଷ || -୨

ମୁଁ କି କେବେ ଜାଣିଥିଲି ଆପେ
କୁନି ଭାଇ ଦେବେ ମୋତେ ଦିଅଁ;
ମାଆ ମୋତେ କହିଛି ବୁଝାଇ --
ମୁଉଁ କାଳେ ଅତି ସୁନା ଝିଅ || -୩

ବସି ଏବେ ରହୁଛି ତା' ପାଖେ,
ଆଉ ମୁଁ ତ ହେଉନି ଚଗଲୀ,
ପଢୁଛି ମୁଁ ତାହାରି ପାଖରେ
ଖାତା ବହି ଥଳୀ ମୋର ଖୋଲି || -୪

ଭାଇ ମୋତେ ଚିହ୍ନିଲାଣି ଏବେ,
ଆଖି ଖୋଲି ଚାହେଁ ମିଟି ମିଟି,
ନାନୀ ବୋଲି ଡାକିବ ସେ ପୁଣି
ବରଷକେ ପାଟି ଗଲେ ଫିଟି ||  -୫

ସାଙ୍ଗ ମୋର ଲାଗେ ମୋ ସାଥୀରେ
ବହି ଦିନେ ଦେଲା ମୋ ଲୁଚାଇ,
ଡରାଇ ମୁଁ କହି ଦେଲି ତାକୁ --
ଜାଣିନୁଁ କି ବଡ଼ ହେବ ଭାଇ ?  -୬

ରାକ୍ଷୀ ବାନ୍ଧି ଦେବି ତା ହାତରେ
ସେତିକିରେ କାମ ମୋର ଶେଷ,
ଡରିବିନି କାହାକୁ ଜଗତେ
ହେଲେ ବି ମୁଁ ଛୋଟିଆ ମଣିଷ ||  -୭

*ଲଳାଟେନ୍ଦୁ କବି: ୧୭ ଅଗଷ୍ଟ ୨୦୧୬*



ଛୋଟିଆ ମଣିଷ -୨
ଖେଳୁଛି ସେ ପେଟେଇ ପେଟେଇ

ଦେଖ ଏଣେ କୁନି ଭାଇ ମୋର
ପାଖେ ଆସି ବଢ଼ାଉଛି ହାତ;
ପାଟି ଖୋଲି କରେ ଆଉଁ ଆଉଁ
ଖାଇବାକୁ ମୋ ଥାଳୀରୁ ଭାତ ||  -୮

ହେଉ ତାର ଭାତିଖିଆ ଥରେ
ଖୋଇ ଦେବି ଭାତ ତରକାରୀ;
ତା ଲାଗି ମା ରାନ୍ଧି ଦେବୁ ନିତି
ଭାତ ଡାଲି ଭଜା କ୍ଷିରୀ ପୁରି || -୯

ତାକୁ କିଆଁ ରାଗୁଛୁ ତୁ ମିଛେ,
ଖେଳୁଛି ସେ ପେଟେଇ ପେଟେଇ;
ଭଙ୍ଗା ଫିଙ୍ଗା କରିବନି କିଛି,
କଥା ମୋର ମାନୁଛି ମୋ ଭାଇ || -୧୦

ସୁନା ଝିଅ କହି ମୋତେ କେତେ
ମୋ ଉପରେ ଉଠେଇଛୁ ହାତ;
ମାରିବୁନି ମୋ କୁନି ଭାଇକୁ,
ମାରିଲେ ମୁଁ ଖାଇବିନି ଭାତ || -୧୧

ଦେଖିଛୁ ତ ମୋ ସୁନା ଭାଇର
ଟିକି ଆଖି ନାକ କାନ ଜିଭ,
କି କଅଁଳ ତା ଦେହଟା ସାରା,
ବାଡ଼େଇଲେ କେମିତି ସହିବ ? -୧୨

ଫୁଲି ଗଲେ ପାରିବ ସମ୍ଭାଳି ?
ଦେହେ ତାର କଅଁଳ ମାଉଁସ;
ମୋଠୁ କେତେ ଛୋଟ ହାତ ପାଦ,
କେଡ଼ିକି ସେ ଛୋଟିଆ ମଣିଷ ! -୧୩
ଲଳାଟେନ୍ଦୁ କବି ୩୧-୦୮-୨୦୧୬



ଛୋଟିଆ ମଣିଷ -3
ଛିଡ଼ା ହେଇ ଶିଖିଲାଣି ଭାଇ

ଛିଡ଼ା ହେଇ ଶିଖିଲାଣି ଭାଇ,
ଦୁଇ ଦିନେ ଚାଲିବ ଆଗକୁ;
ଛିଡ଼ା ହେଲେ କରେ କେତେ ପାଟି,
କେଡ଼େ ଖୁସି ଦେଖ ତା' ବାଗକୁ ||-୧୪

ବସୁଅଛି ଧରି ଖାତା ବହି,
କେତେ ମନ ପଢ଼ିବାକୁ ପାଠ;
ଚାଲି ଶିଖୁ ପଢ଼େଇବି ତାକୁ,
ଭାଇ ମୋର ହେବ ବଡ଼ ଚାଟ || -୧୫

ଅ' ଆ' ଠାରୁ ପଢ଼େଇବି ବସି,
ଚନ୍ଦ୍ରବିନ୍ଦୁ ଯାକେ ମୁଁ ଅକ୍ଷର;
ଆକାରଠୁ ଔକାରର ଚିହ୍ନ,
ବର୍ଣ୍ଣବୋଧ ସାରା ଯୁକ୍ତାକ୍ଷର || -୧୬

ଏକ ଦୁଇ ତିନି ଚାରି ଠାରୁ
ପଣିକିଆ ଶିଖାଇବି ବସି;
ମିଶାଣ, ଫେଡ଼ାଣ, ହର, ଗୁଣ
ଶିଖି ସିଏ ଅଙ୍କ ଯିବ କସି || -୧୭

ପଢ଼ି ଆମେ ବିଜ୍ଞାନ, ଭୂଗୋଳ
ବଡ଼ ହେଲେ ଯିବା ମହାକାଶ;
ଲେଖାଅଛି ମୋ ପାଠ ବହିରେ
ଶିଶୁ ନୁହଁ ଛୋଟିଆ ମଣିଷ || -୧୮



ଛୋଟିଆ ମଣିଷ - ୪
ଭାଇ ଯିବ ପାଠ ପଢ଼ି

ଖଡ଼ିଛୁଆଁ ସରିଛି ଭାଇର,
କାଲିଠୁ ସେ ଯିବ ପାଠ ପଢ଼ି;
ବାଟ ଘାଟ ଜାଣେ ନାହିଁ ସିଏ,
ନେବି ତାର ହାତ ଧରି ଧରି || -୧୯

ମା'ଆ କହେ କରିଦେବ ସିଏ
ସବୁ କାମ ଆମ ଦୁହିଙ୍କର;
ମାଆ ଦେହ ଭଲ ନାହିଁ ଜମା,
ଭାଇ ମୋତେ ଲାଗିଲା ଏଥର || -୨୦

ଶିଖେଇଛି ମୋ କୁନି ଭାଇକୁ "...
ଦୟାମୟ ହେ ବିଶ୍ୱବିହାରୀ,"
ଇସ୍କୁଲରେ ପହଞ୍ଚାଇ ତାକୁ
ପ୍ରାର୍ଥନାରେ ଦେବି ଛିଡ଼ା କରି || -୨୧

ଛୁଟି ହେଲେ ଆଣିବି ସାଥୀରେ
ହାତ ଗୋଡ଼ ଘରେ ଦେବି ଧୋଇ,
ଚଣକ୍ୟଙ୍କ ନୀତିବାଣୀ କାଢ଼ି
ନିତି ଗୋଟେ ଦେବି ମୁଁ ଘୋଷେଇ || -୨୨

ଖେଳି ଆସି ଧରି ବହି ଖାତା
ପଢ଼ିବି ମୁଁ, ପଢ଼େଇବି ତାକୁ;
ବହି କରି ଚୌତା ସାଇତା,
ଯିବା ଦୁହେଁ ଭାତ ଖାଇବାକୁ || -୨୩

ପାହାନ୍ତାରୁ ପଢ଼ିବି ମୁଁ ପାଠ,
ଉଠିବ ସେ ଦୁଇଘଡ଼ି ପରେ;
ଛୋଟ ସିଏ, ଶୋଇବ ଅଧିକ,
ଲେଖା ଅଛି ମୋ ପାଠ ବହିରେ || -୨୪

ନିୟମରେ ଖାଇ ଶୋଇ ଖେଳି,
ପାଠ ପଢ଼ି ଥିବା ହସ ହସ;
ବଡ଼ ହେବା, ବାପାମା କହିବେ,
"ଏହି କି ସେ ଛୋଟିଆ ମଣିଷ !" -୨୫

ଲଲାଟେନ୍ଦୁ କବି -୨
୦୧୬୧୨୧୫-୧୧୧୪
ଶ୍ରୀ ହରିଶରଣମ୍



ଛୋଟିଆ ମଣିଷ-୫

ଘର ଛାଡ଼ି ଯିବି ଦୂରେ
ଘର ଛାଡ଼ି ଯିବି ବହୁ ଦୂରେ
ସେ ଜାଗାରେ ହେଲା ମୋ ଚାକିରୀ;
କାଲି ପରି ମାସ ଗୋଟେ ପରେ
ଭାଇର ବି ପଢ଼ା ଯିବ ସରି || -୨୬

କେତେ ଆଉ ବସିବି ମୁଁ ଘରେ,
ଖରଚକୁ ପଇସା ବି ଲୋଡ଼ା;
ପାଠ ଯଦି ନ ଲାଗେ କାମରେ
ଧୂଳି ମାଟି ସବୁ ପାଠ ପଢ଼ା || -୨୭

ମିଠା କବିତା

ମାଆ କୁ ତ ବୁଝେଇଲି କେତେ--
ଦୂରେ ଗଲେ ହେବି ନାହିଁ ପର;
ଆସୁଥିବି ସବୁ ମାସ ଅନ୍ତେ,
ସବୁ ଦିନେ ରଖିବି  ଖବର ||      -୨୮

ମାଆ ମୋତେ କହୁଅଛି ନିତି,
କାହିଁକି ତୁ ରାଜି ହେଉ ନାହୁଁ,
ବାହାଘର ନ ସାରିଲେ ତୋର
ପୁଅ ଲାଗି ଆଣିବି କି ବୋହୂ ?    -୨୯

ଖୋଲି ଦେଲି ମାଆଠି ହୃଦୟ
ମୋ ଲାଗି ତୁ ଖୋଜିବୁନି ବର;
ନିଜେ ନିଜେ କରିଛି ମୁଁ ଥୟ,
କରି ଦେବୁ ସେଠି ବାହାଘର ||   -୩୦

ଭାଇ କହେ ପାରିବନି ଖୋଜି,
ବାହା ହେବ ବାପା ମା କଥାରେ;
ନ ହେଲେ ନ ହେଉ ଏବେ ରାଜି
ପଢ଼ା ତାର ସରି ଯାଉ ଥରେ ||   -୩୧

ଆଗ ନେବୁ ତୋ ଦେହ ଯତନ
ଦେହ ତୋର ରହୁ ନାହିଁ ଭଲ;
ଆଗ ପରି ଏଣିକି ରାନ୍ଧନା
ବେଶି ତେଲ-ମସଲାର ଝୋଳ || -୩୨

କହିଛି ମୁଁ ଭାଇ ହାତ ଧରି
କରୁଥିବୁ ବାହାରର କାମ;
ବାପା ଏବେ ପାରିବେ କି କରି
ଦିନ ରାତି ଏତେ ପରିଶ୍ରମ ?       -୩୩

ଦୁହିଙ୍କୁ ତ ଲାଗୁଛି ଓଷଧ;
କାହା ସେବା କରିବ ବା କିଏ ?
ହେଳା କଲେ ଆସିବ ବିପଦ,
ରଖିବୁ ମୋ ଛୋଟ କଥାଟିଏ ||   -୩୪

ନିୟମିତ ଅଉଷଧ ଆଣି;
ଖୋଇ ଦେବୁ ମାଆାକୁ ହାତରେ;
ସେ ତ ଜମା ପାରେ ନାହିଁ ଜାଣି:
ଦିନ ବେଳେ, କେଉଁଟା ରାତିରେ || -୩୫

ମୋ କଥାରେ ଆଜି ଯାଏ ଭାଇ
ହେଇ ନାହିଁ କେବେ ଅମାନିଆଁ;
ଏଣୁ ମୋର ମନେ ଦକ ନାହିଁ
ଭାଇ ଥାଉଁ ଡରିବି ମୁଁ କିଆଁ ? -୩୬

ଲଲାଟେନ୍ଦୁ କବି ୨୦୧୭୦୨୦୧-୦୬୫୫ ଶ୍ରୀ ହରିଶରଣମ୍



ଛୋଟିଆ ମଣିଷ-୬
ସରିଲାଣି ଭାଇ ବାହାଘର

ସାତ ଦିନ ହେଇ ଗଲା ଆଜି
ସରିଲାଣି ଭାଇ ବାହାଘର
ଜିନିଷ ମା' କରିଅଛି ସଜ,
ଘେନି ସବୁ ଆଣିଲି ମୋ ମୋ ଘର ||-୩୭

ଲୁଗା ପଟା ବାଛି ଆମ ଲାଗି,
ଡବା ଭରି ବଡ଼ିଠୁ ଆଚାର,
ଜରି ଲଗା ନାଲି ନେଳୀ କନା
ଦେଇଛି ସେ, ପିନ୍ଧିବେ ଠାକୁର || -୩୮

**ମିଠା କବିତା**

ମାଆ ସାଥେ ମୋ କୁନି ଭାଉଜ
ହେଲା କେଡ଼େ ଏ ଘର ସେ ଘର;
ମାଆଟା ମୋ ଏଡ଼ିକି ଛାନିଆଁ,
କରି ଦେଲା ତାକୁ ହରବର ||     -୩୯

କେତେ ଥର କହିଲି  ତାହାକୁ --
ଦେହର ତୁ କର ଦେଖାଶୁଣା,
ଜାଣିଛୁ ତ  ଯିବା ବହୁ ଦୂର,
ବେଶି ଆମ ଓଜନ ବଢ଼ାନା ||     -୪୦

ବାପା ଦେହ ଆଗଠୁ ଖରାପ --
ଭାଇ ମୋର କରୁଛି ବଜାର;
ଯାହା ହେଲେ ଶୁଣିବେ କି ବାପା,
ଘରେ କେବେ ବସିବେ କି ସ୍ଥିର ?  -୪୧

ସିଏ କିନ୍ତୁ କହୁଥିବେ ସଦା,
ବସି ରହୁ ଆମ ନୂଆ ବୋହୂ;
ଶାଶୁ ଘର ଆସୁ ନ ଆସୁଣୁ
ଘର କାମ କରିବ ସେ କାହୁଁ ?     -୪୨

ଭାଇକୁ ବି କହନ୍ତି ବୁଝାଇ--
ଆସିଛି ସେ ନିଜ ଘର ଛାଡ଼ି;
ମନେ ତାର ପଡୁ ଥିବ ସବୁ,
ବେଶି ତାକୁ ରହିବୁନି ଛାଡ଼ି ||     -୪୩

ଲାଗୁ ଥିବ ଏକା ଏକା କେତେ,
କାନ୍ଦିବ ସେ ଅଳପ କଥାରେ;
ଅଫିସରୁ ଫେରିବୁ ସହଳ,
କରିବୁନି ଡେରି ଅଯଥାରେ ||     -୪୪

ବେଶି ଦିନ ପାରିଲିନି ରହି,
ଚାହୁଁ ଚାହୁଁ ଛୁଟି ଗଲା ପୂରି,
ପୁଣି କେବେ ପାଇଗଲେ ଛୁଟି
ଆସିବି ମୁଁ ଦେଖି ଆଗ ପରି ||   -୪୫

ମାଆ ମୋର ପାରୁ ନାହିଁ ଜାଣି,
ଦେହ ତାର ଟାଣୁ ନାହିଁ ଆଉ;
ମାନିବ କି କେବେ ସେ କହିଲେ--
କିଛି କାମ ପଡ଼ିଥିଲେ ଥାଉ ?       -୪୬

ଦେହ ଭଲ ନ ରହୁ ପଛକେ
ବାପା ଆମ ସଦା ହସ ହସ ||
କହନ୍ତି ସେ ଆସିଲା ଏ ଘରେ
ଆଉ ଗୋଟେ ଛୋଟିଆ ମଣିଷ ||        -୪୭

ଲଲାଟେନ୍ଦୁ କବି  ଶ୍ରୀ ହରିଶରଣମ୍         ୨୦୧୭୦୨୦୭-୨୦୪୯



ଛୋଟିଆ ମଣିଷ ଭାଗ-୭
ଭାଇ ଘରୁ ଫେରୁଛି ମୁଁ

ଭାଇ ଘରୁ ଫେରୁଛି ମୁଁ ଏବେ,
କଟେଇଲି ଚାରି ଦିନ ଛୁଟି,
ହାତ ଏବେ ଯିବ କି  ପାଟିକୁ,
ପାରିବିକି ଖାଇ ପଟେ ରୁଟି ?       -୪୮

ଜାଣିଛ ନା ଦେଇଛି ଭାଉଜ
ତୁମଠାରୁ ଦି'ଗୁଣ ଜିନିଷ;
ହେଲେ କିଏ କହିଲା କି ମୋତେ,
"ଶୁଣ ମାମା ! ଛୋଟିଆ ମଣିଷ ?"        -୪୯

**ମିଠା କବିତା**

ମୋତେ ଛାଡ଼ି ଖାଏ ନା ଭାଉଜ,
ପାଟିକୁ ତା' ଯାଏ ନାହିଁ ହାତ,
ହେଲେ ସେ କି ଦେବ ମୋ ପାଟିରେ
ମାଆ ପରି ଛୋଟ ଗୁଣ୍ଡା-ଭାତ ? -୫୦

ବାପା ଆମେ ଅଛୁ ମିଳି ମିଶି,
ଭାଇ ପରି ସୁନା ମୋ ଭାଉଜ !
ଯେତେ ହେଲେ ମାଆ ଟା ତ ମାଆ,
ତାହା ବିନା ଘରଟା କି ସଜ ? -୫୧

ଭାଇ ଘରେ ଦେଖି ତୁମ ଛବି,
ସବୁ ମୋତେ ଲାଗି ଗଲା ବିଷ;
ଭିତର ମୋ ଗଲା ଜଳି ପୋଡ଼ି,
ତୁମ ମୁହଁ ଥିଲା ହସ ହସ || -୫୨

ବାପା ତୁମେ ଭାବିବନି ଜମା,
କିଛି ନାହିଁ ଅଭାବ ଆମର,
ଶିଖାଇଛ ତୁମେ ମହାବିଦ୍ୟା,
କେହି ଏଠି ନାହିଁ ଆମ ପର || -୫୩

କେତେ ଭଲ ପଡ଼ିଶା ମଉସା
କହନ୍ତି ତୁ ଗେଲି ଝିଅ ମୋର;
ଯେତେ ହେଲେ ନିଜ ବାପାମାଆ
ନିଜ ଲାଗି ସବୁଠୁ ନିଜର || - ୫୪

କିଏ କେବେ ନିଜଘର ଛାଡ଼ି
ପାରିବ କି ସଜାଇ ଠାକୁର ?
କାହା ଘରେ ପାରିବି କି ଖାଇ
ଚୋରି କରି ଆମ୍ବୁଲ ଆଚାର ? -୫୫

ମାଆ ଛଡ଼ା କହିବି କାହାକୁ,
କୋଳ ଦେଖା ରଖିବି ମୁଁ ମଥା,
ଶୋଇ ଯିବି ଝାଙ୍କିଲାଣି ଆଖି,
ମୋ ପାଖେ ତୁ ଟିକିଏ ବସି ଥା ? -୫୬

ଶେଷ ଯାଏ ଶୁଣିଲୁନି ଜମା,
ନିଜ କାମ କଲୁ ସବୁ ନିଜେ,
କିଛି କେବେ ନ ନେଇ ଆମଠୁ,
ଗଲୁ କେଉଁ ଅଜଣା ରାଇଜେ || -୫୭

ମାଆ ମୋର ସରଳିଆଟିଏ,
ଜାଣେ ନାଁ ସେ ସଉଦା ବଜାର,
ମାଆ କଥା ବୁଝୁ ଥିବ ବାପା
ପାଖେ ଆଉ କେ ଅଛି ତାହାର || -୫୮

ମାଆ, ତୁ ତ ଜାଣିଛୁ ବାପାଙ୍କୁ,
ଜାଣନ୍ତିନି ଘର କାମ କିଛି;
ମନେ ଦେବୁ ପକେଇ ମା ଟିକେ,
ସେ ଦେଶରେ ଯେ ରୀତି ଚଳୁଛି || -୫୯

ଭାଉଜ ମୋ ରଖିଛି ଯତନେ
ଆମଘର ସେ ପୁରୁଣା ଖାତା;
ଯେଉଁଥିରେ ଥିଲା ତୋ ହିସାବ,
ବାପାଙ୍କର ପୁରୁଣା କବିତା || -୬୦

ପାରିଲିନି ପଢ଼ି ଗୋଟେ ଗୀତ,
ଛୁଆବେଳେ ପଢୁଥିଲି କେତେ;
ହେଇ ଯିବ ଅସନା ଅଳିଆ,
ହାତ ମାରି ଧରିବି କେମନ୍ତେ ? -୬୧

କହିଲି ମୁଁ ଶୁଣେଇ ଦେ ଭାଇ
ସେ ଖାତାରୁ ଗୋଟେ ହେଲେ ଗୀତ;
କାନ୍ଦିଲା ସେ ଖାଲି କଇଁ କଇଁ,
ସେଦିନ ସେ ଖାଇଲାନି ଭାତ || -୬୨

ମାଆ ମୋତେ ରାଗିବୁନି ଜମା,
ମାନିଲିନି ସେ ଦିନ ତୋ କଥା,
ପୁଅ ହେଇ ପାରିଲାନି ଭାଇ,
ପଢ଼ନ୍ତି ମୁଁ ବାପାଙ୍କକବିତା ? -୬୩

କି ଦରଦୀ ବାପାଙ୍କର ଲେଖା,
ଥିଲା ବେଳେ କାନ୍ଦୁଥିଲି ପଢ଼ି,
ସିଏ ଏଠୁ ଚାଲି ଯିବା ପରେ
ପଢ଼ିଥିଲେ ଯାଇଥାନ୍ତି ପଡ଼ି || -୬୪

ଲେଖି ଏତେ ଦରଦୀ କାହାଣୀ
ସଦାବେଳେ ହସୁଥିଲ କେତେ;
ଛାଡ଼ିଦେଇ ଗଲ ପଛେ ବାପା
ସେ ଶକତି ଦେଲନି ତ ମୋତେ || -୬୫

ମାଆ ଆଉ ପାରୁନି ରେ କହି,
ଯାନ ଏବେ ଉଠିବ ଆକାଶ;
ଭଲ ଥିବ ଭଲ ଅଛୁ ଆମେ,
ସବୁ ତୁମ "ଛୋଟିଆ ମଣିଷ" || -୬୬

ରାଣ ମୋର କରିବିନି ଆଉ
ଭାଇ ପାଖେ ତୋ ନାମେ ଚୁଗୁଲି;
ଦେଇ ଦେ ମା ବାକି ଅଛି ଯାହା
ମନ ଇଚ୍ଛାଯେତେ ଦେବୁ ଗାଳି || -୬୭

ଲଲାଟେନ୍ଦୁ କବି ୩୦-୦୯-୨୦୧୬